


୧୯୭୬ ଅଗଷ୍ଟ ୧୫ ତାରିଖ ଦିନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଭୁବନେଶ୍ୱରଠାରେ ନବନିର୍ମିତ 'ସୂଚନା ଭବନ'ର ଶୀତତାପ-ନିୟନ୍ତ୍ରିତ ପ୍ରେକ୍ଷାଳୟରେ ଉଦ୍‌ବୋଧନ ଦେଉଛନ୍ତି ।




ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ୧୯୭୬ ଅଗଷ୍ଟ ୨୦ ତାରିଖ ଦିନ ସମ୍ବଲପୁରଠାରେ ନବନିର୍ମିତ ପାନ୍ଥ ନିବାସ ଉଦ୍‌ଘାଟନ କରୁଛନ୍ତି ।

# ଉତ୍କଳ ପ୍ରସଙ୍ଗ

୧୯୭୭ ସେପ୍ଟେମ୍ବର: ଭାଦ୍ରବ ୧୮୯୯ ଶକାବ୍ଦ
୩୩ଶ ଭାଗ : ଦ୍ୱିତୀୟ ସଂଖ୍ୟା

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଯୋଜନା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ଯେଉଁଠି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ୍ ନୁହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସ୍ୱରାଷ୍ଟ୍ର (ଲୋକ ସମ୍ପର୍କ) ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁବେଳେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

* * *

ମୁଖ୍ୟ ସମ୍ପାଦକ:
ଶ୍ରୀ ଅଉଧ ନାରାୟଣ ତିୱାରୀ
ଆଇ. ଏ. ଏସ୍.,
ଲୋକ ସମ୍ପର୍କ ନିର୍ଦ୍ଦେଶକ

ସମ୍ପାଦକ:
ମହାପାତ୍ର ନୀଳମଣି ସାହୁ

ସହକାରୀ ସମ୍ପାଦକ:
ଶ୍ରୀ ବ୍ରଜମୋହନ ପଟ୍ଟନାୟକ
ଶ୍ରୀ କିଶୋର ଚନ୍ଦ୍ର ବେହେରା

ପ୍ରଚ୍ଛଦପଟ :
ଶ୍ରୀ ଲଲାଟ ମୋହନ ପଟ୍ଟନାୟକ

ମୁଦ୍ରଣ:
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ବାର୍ଷିକ ଦେୟ—ଟ ୧୦'୦୦ ପ୍ରତିଖଣ୍ଡ—ଟ ୧'୦୦

## ସୂଚୀପତ୍ର

ପ୍ରସଙ୍ଗ କ୍ରମେ

# ଗୁରୁ ଦିବସର ମାହାତ୍ମ୍ୟ

ସେପ୍ଟେମ୍ବର ପାଞ୍ଚ ତାରିଖ । ଏହି ଦିବସଟି ଭାରତବର୍ଷର ଜଣେ ବିଶିଷ୍ଟ ମନୀଷୀ ଦାର୍ଶନିକ ସର୍ବପଲ୍ଲି ରାଧାକୃଷ୍ଣନ୍‌ଙ୍କ ଜନ୍ମ ହେତୁ ଆମ୍ଭମାନଙ୍କ ପକ୍ଷରେ ଏକ ସ୍ମରଣୀୟ ପୁଣ୍ୟ ଦିବସ ରୂପେ ବିବେଚିତ ହୋଇ ଆସିଛି । ସଂପ୍ରତି ଏହା ଗୁରୁ ଦିବସ ରୂପେ ପରିପାଳିତ ହେଉଛି ।



ପୁଣ୍ୟଶ୍ଲୋକ ରାଧାକୃଷ୍ଣନ୍ କେବଳଭାରତବର୍ଷର ନୁହଁ ପୃଥିବୀର କତିପୟ ବିଶିଷ୍ଟ ଚିନ୍ତାନାୟକ ମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଏବଂ ତାଙ୍କର ପ୍ରତିଭା ବଳରେ ବିଶ୍ୱବନ୍ଦିତ ମହିମା ଅର୍ଜନ କରିଥିଲେ ; ସେଥିଲାଗି ମହାତ୍ମା ଗାନ୍ଧୀଙ୍କ ଠାରୁ ଆରମ୍ଭକରି ଜବାହରଲାଲ ନେହେରୁ, ରାଜଗୋପାଳାଚାରୀ, ରବୀନ୍ଦ୍ରନାଥ ଠାକୁର ପ୍ରମୁଖ ମହାନ୍ ପୁରୁଷମାନେ ତାଙ୍କୁ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ଏହି ମହତ୍ତ୍ୱ-ଲବ୍ଧ ଶ୍ରଦ୍ଧା ଓ ସମ୍ମାନ ତାଙ୍କୁ ଭାରତବର୍ଷର ସର୍ବୋଚ୍ଚ ଆସନରେ ଅଧିରୂଢ଼ କରାଇ ଦେଇଥିଲା । ସେ ଭାରତବର୍ଷର ରାଷ୍ଟ୍ରପତି ଆସନ ଅଳଂକୃତ କରି ଦାର୍ଶନିକ ପ୍ଲେଟୋଙ୍କର ଭବିଷ୍ୟତ ବାଣୀ ସଫଳ କରିଥିଲେ । ବହୁବର୍ଷ ତଳେ ଗ୍ରୀକ ଦାର୍ଶନିକ ପ୍ଲେଟୋ

ଭବିଷ୍ୟବାଣୀ କରିଥିଲେ ( ତାଙ୍କର "ଆଦର୍ଶ ରାଷ୍ଟ୍ର" ଗ୍ରନ୍ଥରେ ) ଯେ ଭବିଷ୍ୟତର ଆଦର୍ଶ ରାଷ୍ଟ୍ରରେ ଜଣେ ଦାର୍ଶନିକ ଯଥୋଚିତ ଶାସକର ଆସନରେ ବସିବେ ।

ଏହି ଭାରତବର୍ଷରେ ତାହା ସମ୍ଭବ ହୋଇଥିଲା । ପୂଜନୀୟ ରାଧାକୃଷ୍ଣନ୍ ସର୍ବୋଚ୍ଚ ଦାର୍ଶନିକ ହେଲେ ସତ୍ୟ—ମାତ୍ର ସବୁଠାରୁ ଉଲ୍ଲେଖଯୋଗ୍ୟ କଥା ହେଲା—ସେ ଥିଲେ ଜୀବନବ୍ୟାପୀ ଜଣେ ଆଦର୍ଶ ଶିକ୍ଷକ, ଅଧ୍ୟାପକ । ତାଙ୍କର ଅଧ୍ୟାପକ ଜୀବନ ସଂପର୍କରେ ଏତେ ଜନଶ୍ରୁତି ଓ କିମ୍ବଦନ୍ତୀ ପ୍ରଚଳିତ ଯେ ତାହାହିଁ ତାଙ୍କର ମହତ୍ତ୍ୱର ଶିକ୍ଷକତା ସଂପର୍କରେ ସବୁଠାରୁ ବଡ଼ ପ୍ରମାଣ । କଥିତ ଅଛି ଯେ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲାବେଳେ ତାଙ୍କୁ ଗୋଟିଏ ବଗି ଗାଡ଼ିରେ ବସାଇ ଘୋଡ଼ା ବଦଳରେ ପରମ ଶ୍ରଦ୍ଧା ଓ ଭକ୍ତିର ସହିତ ଛାତ୍ରମାନେ ଗାଡ଼ିଟିକୁ ଟାଣି ଟାଣି ତାଙ୍କ ଘର ପର୍ଯ୍ୟନ୍ତ ନେଇ ଯାଉଥିଲେ । ଭାରତର ଆଉ ଜଣେ ଯୋଗଜନ୍ମା ମହାପୁରୁଷ ଶ୍ରୀ ଅରବିନ୍ଦ ବରୋଦା କଲେଜରେ ଅଧ୍ୟାପନା କରୁଥିଲାବେଳେ ତାଙ୍କ ଗାଡ଼ିକୁ ମଧ୍ୟ ଛାତ୍ରମାନେ ଏହିପରି ବେଳେବେଳେ ଟାଣି ନେଉଥିବାର ଜନଶ୍ରୁତି ରହିଛି ।

କେବଳ ଏହି ଦୁଇଜଣ ନୁହନ୍ତି, ଏ ଦେଶର ଓ ଆମ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି (ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର ପ୍ରମୁଖ) ଯେଉଁମାନେ କି ଜନନାୟକ ବା ଦେଶ ନିର୍ମାତା ରୂପେ ଆମ୍ଭମାନଙ୍କର ପୂଜନୀୟ ହୋଇଛନ୍ତି—ସେମାନେ ସମସ୍ତେ ମୂଳତଃ ଶିକ୍ଷକହିଁ ଥିଲେ । ଶିକ୍ଷକକୁ ଦେଶ ଓ ଜାତିର ଯେ ମେରୁଦଣ୍ଡ ବୋଲି କୁହାଯାଇଛି—ଏହି ବିଶେଷୋକ୍ତିର ନିଦର୍ଶନ ଏହି ସବୁ ମହାନ୍ ବ୍ୟକ୍ତିମାନେ ଆପଣା ଆପଣା ଜୀବନରେ ଦେଖାଇ ଯାଇଛନ୍ତି ।

ତେବେ ଭାରତବର୍ଷର ଇତିହାସ ପର୍ଯ୍ୟାଲୋଚନା କଲେ ଆମେ ଦେଖିବା ଯେ ଯୁଗ ଯୁଗ ଧରି ଏ ଦେଶରେ ରାଷ୍ଟ୍ରନିର୍ମାତାମାନେ ଏହି ଶିକ୍ଷକ କୁଳରୁହିଁ ଉଦ୍‌ଭୂତ ହୋଇ ଆସିଛନ୍ତି । ଏବଂ ଯେଉଁସବୁ କ୍ଷେତ୍ରରେ ଏହା ନ ଘଟିଛି ସେଠାରେ ଗୁରୁ ବା ଶିକ୍ଷକମାନେ ରାଜା ଓ ଶାସକମାନଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ଉପଦେଷ୍ଟାରୂପେ ରହି ଆସିଛନ୍ତି । ଶିକ୍ଷକ କେବଳ ଛାତ୍ରମାନଙ୍କୁ ପାଠ ପଢାନ୍ତି ନାହିଁ—ଶିକ୍ଷକର ମୁଖ୍ୟ ଭୂମିକା ହେଲା ସମାଜକୁ ସର୍ବଦା ସବୁଦିଗରେ ଠିକଣା ବାଟଟିକୁ ଧରିବାଲାଗି ଶିକ୍ଷା ଦେବା । ଦେଶର ରାଜନୀତି, ଅର୍ଥନୀତି, ଧର୍ମ, ସାହିତ୍ୟ, ସଂସ୍କୃତି ଓ ଲୋକାଚାର ଉପରେ ଆଦର୍ଶ ଶିକ୍ଷକମାନେ ସର୍ବଦା ସଚେତନ ଦୃଷ୍ଟି ରଖିଥାନ୍ତି । ସମାଜର ସଙ୍କଟ ସମୟରେ ବା ସମାଜ ଯେତେବେଳେ ଗୋଟିଏ ବିରାଟ ପରିବର୍ତ୍ତନ ଭିତର ଦେଇ ଗତି କରୁଥାଏ—ସେତେବେଳେ ସମସ୍ତେ ବିହ୍ୱଳ ହୋଇ ପଡ଼ୁଥିବା ବେଳେ ସଜାଗଚକ୍ଷୁ ଶିକ୍ଷକହିଁ ତା'ର ମନ ସ୍ଥିର ରଖିଥାଏ—ତା'ର ଦୃଷ୍ଟି ସ୍ଥିର ରଖିଥାଏ । ଶିକ୍ଷକ ନିଜେ କାଳର ପ୍ରବାହ ଭିତରେ ଥାଇ ମଧ୍ୟ କାଳଠାରୁ ନିଜକୁ ମାନସିକ ଭାବେ ଦୂରେଇ ରଖି ଅତୀତ ଓ ବର୍ତ୍ତମାନକୁ ନିର୍ବାଧ ଭାବରେ ବିଶ୍ଳେଷଣ କରି ଭବିଷ୍ୟତ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଥାଏ । କାଳର ଘାତପ୍ରତିଘାତ ଭିତରେ ଶିକ୍ଷକ ନିଜେ ହୁଏତ ଆହତ ହୁଏ—ମାତ୍ର ସେ ନିର୍ଭୀକ ରହିବନ୍ଧି ରହିବ । କୌଣସି ବାହ୍ୟ ଶକ୍ତି ତା'ର ଉନ୍ନତ ଶିରକୁ ଅବନତ କରିପାରିବ ନାହିଁ—ଯଦି ସେ ନିଜକୁ ଜାତିର ଶିକ୍ଷକ ଭୂମିକାରେ ରଖିବାରେ ସକ୍ଷମ ବା ସମର୍ଥ ହୋଇପାରେ । ସେ ନିରପେକ୍ଷ ଓ ଦେଶର ରାଜା, ପ୍ରଜା, ଶାସକ, ଶାସିତ, ଧନୀ ନିର୍ଦ୍ଧନ, ବିଦ୍ୱାନ ମୂର୍ଖ, ଶିଷ୍ଟ, ବିଶିଷ୍ଟ ଓ ଅଶିଷ୍ଟ ସମସ୍ତଙ୍କ ପ୍ରତି ତା'ର ହୃଦୟ ବାତ୍ସଲ୍ୟ-ପରିପୂର୍ଣ୍ଣ । ସେ ଚାହେଁ ସମସ୍ତେ ଭଲ ହୁଅନ୍ତୁ—ସମସ୍ତେ ଜ୍ଞାନ ଲାଭ କରନ୍ତୁ—ସମସ୍ତେ ଶିକ୍ଷିତ ହୁଅନ୍ତୁ—ସମସ୍ତଙ୍କର ଅନ୍ତର ପରିଚ୍ଛନ୍ନ ହେଉ । ସମସ୍ତେ ଶୂନ୍ୟରୁ ପୂର୍ଣ୍ଣ ଆଡ଼କୁ ଅଗ୍ରସର ହେବାର ସାଧନା କରନ୍ତୁ । ଶିକ୍ଷକର ବୃତ୍ତିକୁ ପବିତ୍ର କହିବାର କାରଣ ହେଲା—ସେ ତା'ର ଛାତ୍ରମାନଙ୍କୁ ଜ୍ଞାନ ଦେବା ମାଧ୍ୟମରେ ନିଜକୁଇ ଦେଇ ଚାଲିଥାଏ ଆଜୀବନ । ଜଣେ ଶିକ୍ଷକଠାରୁ ତା'ର ଛାତ୍ର ବେଶୀ ଜ୍ଞାନୀ ହେଉ—ବେଶୀ ସମ୍ମାନ ଓ ଐଶ୍ୱର୍ଯ୍ୟର ଅଧିକାରୀ ହେଉ—ଏହା ହିଁ ତା'ର ଆନ୍ତରିକ

କାମନା । ସେ ନିଜେ ଜୀବନକୁ ଅଧ୍ୟୟନ କରି ବୁଝିଥାଏ ଓ ଅପରକୁ ତା'ର ଅଧ୍ୟୟନ ଲବ୍ଧ ଜ୍ଞାନ ଦାନ କରି ବୁଝାଏ । ତା'ନିଜର ଅନ୍ତର ଭିତରେ ସେ ସର୍ବଦା ଆଲୋକ ଜଳାଇ ରଖିଥାଏ । ସେ ଯାହା ସଂସ୍ପର୍ଶରେ ଆସେ ତାକୁ ଆଲୋକିତ କରିଦିଏ—ତା'ଭିତରେ ଆଲୁଅ ଜଳାଇ ଦିଏ । ନିଜକୁ ସର୍ବଦା ପ୍ରଜ୍ଜ୍ୱଳିତ ରଖିବା ଓ ଅନ୍ୟକୁ ପ୍ରଜ୍ଜ୍ୱଳିତ କରିବା ହେଉଛି ତା'ଜୀବନର ଅହରହ ସାଧନା ।

ପ୍ରତ୍ୟେକ ଦେଶ ବା ଜାତି ତା'ର ଏବଂବିଧ ଶିକ୍ଷକ ନିକଟରେ ସର୍ବଦା ନତ ହୋଇ ରହିବା ଉଚିତ । ପ୍ରତ୍ୟେକ ସରକାର ଶିକ୍ଷକ କୁଳକୁ ଚିନ୍ତା ବ୍ୟକ୍ତ କରିବାର ଯଥୋଚିତ ସ୍ୱାଧୀନତା ଓ କର୍ତ୍ତୃତ୍ୱ ମଞ୍ଜୁର କରିବା ଉଚିତ । ଆମ ଦେଶର ପ୍ରାୟ ସବୁ ଶିକ୍ଷକ, ଅଧ୍ୟାପକ ସରକାରୀ କର୍ମଚାରୀ । ମାତ୍ର ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କ ଦାୟିତ୍ୱ ଓ କର୍ମଧାରା ଏବଂ ଶିକ୍ଷକର ଦାୟିତ୍ୱ ଓ କର୍ମଧାରା ଭିତରେ ଯେଉଁ ମୌଳିକ ପାର୍ଥକ୍ୟ ରହିଛି ତାକୁ ଦେଶର ସରକାର ସମେତ ଦେଶବାସୀ ମଧ୍ୟ ସ୍ୱୀକାର କରିବା କଥା ।

କିନ୍ତୁ ଏହିଠାରେ ଗୋଟିଏ ପ୍ରଶ୍ନ ଉଠେ—ଜଣେ ବ୍ୟକ୍ତି ଶିକ୍ଷକ ବୃତ୍ତି ଗ୍ରହଣ କଲାବେଳେ ନିଜକୁ ଶିକ୍ଷକ ରୂପେ ଗଢ଼ିବାର ବାସନା ନେଇ ବୃତ୍ତିରେ ଯୋଗ ଦିଏ—ନା ଏହାକୁ ଅନ୍ୟବିଧ ସରକାରୀ ଚାକିରି ଭଳି କେବଳ ବୃତ୍ତିଟିଏ ମାତ୍ର ବୋଲି ଗ୍ରହଣ କରେ ? କାରଣ ଏହାରି ଉପରେହିଁ ଦୁଇପକ୍ଷର ଦାୟିତ୍ୱ, କର୍ତ୍ତବ୍ୟ ଓ ଅଧିକାର ଦେବାନେବା ପୂର୍ଣ୍ଣତଃ ନିର୍ଭର କରିଥାଏ ।

ବହୁଦିନ ଧରି ଆମ ଦେଶରେ ଗୋଟିଏ ପ୍ରଶ୍ନ ବାରମ୍ବାର ଉତ୍ଥାପିତ ହୋଇଥାଏ—ତା' ହେଉଛି, ଶିକ୍ଷକମାନେ ରାଜନୀତିରେ ଯୋଗଦେଇ ପାରିବେ କି ନାହିଁ ? ଏ ପ୍ରଶ୍ନ ଆମ୍ଭମାନଙ୍କ ମତରେ ଅବାନ୍ତର । ଜଣେ ଶିକ୍ଷକ ଦେଶର, ଜାତିର, ସମାଜର ଓ ବିଶ୍ୱର ସର୍ବବିଧ ଉନ୍ନତିକର ଯୋଜନା ସଙ୍ଗେ ଯଦି ମାନସିକ ସ୍ତରରେ ସଂଯୁକ୍ତ ରହେ, ତେବେ ରାଜନୀତି ସେଥିରୁ ବାଦ ଯିବ କିପରି ? ତେବେ ଜଣେ ଶୁଭବୁଦ୍ଧି ସଂପନ୍ନ ଶିକ୍ଷକ ଜାଣେ—ସବୁ ଜ୍ଞାତବ୍ୟ ଓ କର୍ତ୍ତବ୍ୟ ଭିତରେ ସେ କିପରି ସଙ୍ଗତି ରକ୍ଷା କରି ପାରିବ ।

ତେବେ ସେପ୍ଟେମ୍ବର ପାଞ୍ଚ ତାରିଖ—ଏହି "ଗୁରୁଦିବସ"ଟିର ମହତ୍ତ୍ୱ ଅନ୍ୟ ଦୃଷ୍ଟିରୁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଦିନଟି ଆମକୁ ସ୍ମରଣ କରାଇ ଦିଏ—ସମାଜର ଜୀବନରେ ଗୁରୁକୁଳର ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ । ଆମ ଦେଶ କିନ୍ତୁ ବଡ଼ ଅଦ୍ଭୁତ ମାନସିକତାର ଦେଶ । ଯେଉଁ ଦେଶରେ ପୂର୍ଣ୍ଣାବତାର ଭଗବାନ ଶ୍ରୀକୃଷ୍ଣଙ୍କୁ ଗୋବିନ୍ଦ ଗୋପାଳ ବୋଲି ଭକ୍ତି ଗଦଗଦ କଣ୍ଠରେ ବନ୍ଦନା କରାଯାଏ—ସେହି ଦେଶରେ ଗୋରୁମାନଙ୍କ ଦୁର୍ଦ୍ଦଶା କହିଲେ ନସରେ । ସେହିପରି "ଗୁରୁଦିବସ"ଟି ପାଳନ କରିବାର ଏକ ସାମାଜିକ ବିଧାନ ରଖିଦେଇ ଆମ୍ଭେମାନେ ଶିକ୍ଷକମାନଙ୍କ ସମ୍ବନ୍ଧରେ ଏକ ପରିହାସାତ୍ମକ ଆଶଙ୍କା ପ୍ରକାଶ କରିଥାଉ—ତା ହେଲା—ବାରବର୍ଷ ଶିକ୍ଷକତା କଲାପରେ ଲୋକଟିର ମୁଣ୍ଡରେ ଆଉ କିଛି ମଗଜ ଅବଶିଷ୍ଟ ଅଛି କି ନାହିଁ ? ଏ କଥା ଯଦି ଜଣେ ଶିକ୍ଷକ ସମ୍ବନ୍ଧେ ସତ୍ୟ ବୋଲି ପ୍ରମାଣିତ ହୋଇଯାଏ, ତେବେ ଜଣେ ଡାକ୍ତର, ଇଞ୍ଜିନିଅର, କିରାଣି, ହାକିମ, ଅଭିନେତା, ରାଜନୀତିଜ୍ଞ ମଧ୍ୟ ସ୍ୱ ସ୍ୱ ବୃତ୍ତିକୁ ବାରବର୍ଷ ଧରି ନିଷ୍ଠାପର ଭାବେ ସାଧନ କଲାପରେ ସେମାନଙ୍କ ମଧ୍ୟ ତଦ୍ରୂପ ପରିଣାମ ଦେଖା ଯାଇପାରେ । ଅସଲ କଥା ବୁଦ୍ଧିର ବିକାଶ କୌଣସି ବୃତ୍ତି ବିଶେଷ ଉପରେ ନିର୍ଭର କରେ ନାହିଁ । ତାହା କରେ ବ୍ୟକ୍ତିଟିର ଜୀବନଚର୍ଯ୍ୟା ଉପରେ—ତା'ର ବୃତ୍ତିଟିକୁ ତା'ର ପ୍ରବୃତ୍ତି ସଙ୍ଗେ ମିଶାଇ ପାରିବାର କ୍ଷମତା ଉପରେ—ଏବଂ ଶେଷରେ ସମାଜ-ଜୀବନର ବିଭିନ୍ନ କ୍ଷେତ୍ର ସଙ୍ଗେ ନିଜ ବୃତ୍ତିଟିର ସଚେତନ ସଂଯୋଗ ଓ ସଙ୍ଗତି-ସାଧନ ଉପରେ । ଯେଉଁ ବ୍ୟକ୍ତି ଏହା ନ କରିପାରେ—ସେ ଡାକ୍ତର ହେଉ, ଇଞ୍ଜିନିଅର ହେଉ ବା ପ୍ରଶାସକ ହେଉ—ତା'ର ବୁଦ୍ଧିମାନ୍ଦ୍ୟ ଅବସ୍ଥା ଆସିବଇ ଆସିବ ।

ସେ ଯାହା ହେଉ—ଆମ୍ଭେମାନେ ସେହି ଚିରସ୍ମରଣୀୟ ଗୁରୁ, ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଶୁଭ ଜନ୍ମତିଥିରେ ତାଙ୍କର ମହନୀୟ ଚରିତକୁ ସ୍ମରଣକରି କୃତାର୍ଥ ହେବା ସଙ୍ଗେ ସଙ୍ଗେ ଆମ ରାଜ୍ୟର ଶିକ୍ଷକ, ଅଧ୍ୟାପକମାନଙ୍କପ୍ରତି ସକୃତଜ୍ଞ ସମ୍ମାନ ଜଣାଉଛୁ ଏବଂ ଏହି ଦିବସ ଉପଲକ୍ଷେ ଆମର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ବାର୍ତ୍ତା ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଛୁ ।

ଶ୍ରୀମତୀ ଶତପଥୀ ଯଥାର୍ଥରେ କହିଛନ୍ତି—

"ଶିକ୍ଷକମାନେ ହେଉଛନ୍ତି ସମ୍ଭାବନାମୟ ନୂତନ ଯୁଗର ରୂପକାର । ସେମାନଙ୍କର ଆଦର୍ଶନିଷ୍ଠା ଉପରେ ତରୁଣ ସମାଜର ବିକାଶ ନିର୍ଭର କରେ........ସାଂସ୍କୃତିକ ଚେତନା, ଜାତୀୟତାର ମୂଲ୍ୟବୋଧ ଓ ଐତିହ୍ୟଗତ ସଚେତନତାର ସଂପ୍ରସାରଣପାଇଁ ଏ ଜାତିକୁ ଉଦ୍‌ବୁଦ୍ଧ କରିବାଦିଗରେ ଶିକ୍ଷକମାନେ ଅଗ୍ରଣୀ ହେବା ଆବଶ୍ୟକ........ ।"

# ଅଲିମ୍ପିକ୍ ଅନୁଶୋଚନା

ମଣ୍ଟ୍ରିଲ ଖେଳ ପ୍ରତିଯୋଗିତାରେ ଆମ ଦେଶ ଶୋଚନୀୟ ଭାବେ ପରାଜୟ ବରଣ କରିଛି । ଏ-ଦ୍ୱାରା ଦେଶସାରା ବିଭିନ୍ନ ମହଲରେ ଅନୁଶୋଚନାର ଛାୟା ଘୋଟି ଯାଇଛି । ଗତ କେତେବର୍ଷ ମଧ୍ୟରେ ଆମଦେଶ ଆନ୍ତର୍ଜାତିକ କ୍ଷେତ୍ରରେ ରାଜନୀତି, କୂଟନୀତି, ଅର୍ଥନୀତି, ସାମରିକ ଓ ବୈଜ୍ଞାନିକ କ୍ଷେତ୍ରରେ ବହୁ ମାନ ଅର୍ଜନ କରିଥିବାବେଳେ ଅଲିମ୍ପିକ କ୍ରୀଡ଼ାଙ୍ଗନରେ ଏହି ଶୋଚନୀୟ ବିଫଳତା ଯଥାର୍ଥରେ ଆମ୍ଭମାନଙ୍କୁ ବଡ କ୍ଷୁବ୍ଧ କରିଛି ।

୧୯୨୦ ଠାରୁ ଭାରତ ଅଲିମ୍ପିକ ପ୍ରତିଯୋଗିତାରେ ଯୋଗଦେଇ ଆସୁଛି । ଏହି ସମୟ ମଧ୍ୟରେ କ୍ରୀଡ଼ାତଥ୍ୟବିତ୍‌ମାନଙ୍କ ହିସାବ ଅନୁସାରେ ଭାରତ ଏ ପର୍ଯ୍ୟନ୍ତ ହକିରେ ସାତଟି ସ୍ୱର୍ଣ୍ଣପଦକ, ଗୋଟିଏ ରୌପ୍ୟ ଓ ଦୁଇଟି ବ୍ରୋଂଜ୍ ପଦକ ଜୟ କରିଛି ଏବଂ କୁସ୍ତିରେ ମାତ୍ର ଗୋଟିଏ ବ୍ରୋଂଜ ପଦକ ଜୟ କରିଛି ଏବଂ ଏ ବର୍ଷ ମଣ୍ଟ୍ରିଲରୁ ଆମର କ୍ରୀଡ଼ାବୀରମାନେ ଶୂନ୍ୟ ହସ୍ତରେ ଫେରି ଆସିଛନ୍ତି । ଏଥିଲାଗି ଦେଶ ସାରା ହୈ ଚୈ ପଡ଼ିଯାଇଛି । କାରଣ ଇତି ମଧ୍ୟରେ ଆମ ଦେଶ ଓ ଜାତି ସମଗ୍ର ବିଶ୍ୱରେ ବହୁ ଦିଗରୁ ଗୌରବଜନକ ଆସନରେ ଅଧିରୂଢ଼ ହୋଇଗଲାଣି । ଆମର ଆତ୍ମସମ୍ମାନ ମଧ୍ୟ ଖୁବ୍ ବଢିଯାଇଛି । ଫଳରେ ଏଭଳି ଏକ ଶୋଚନୀୟ ପରାଜୟ ଆମକୁ ଭିତରେ ଭିତରେ ଛଟପଟ କରି ମାରୁଛି । କେନ୍ଦ୍ରୀୟ ଶିକ୍ଷା ମନ୍ତ୍ରୀ ଏହାର କାରଣ ଅନୁସନ୍ଧାନ କରିବାକୁ ଆଦେଶ ଦେଲେଣି । କେତେକ ଏହାର ତଦନ୍ତପାଇଁ ପାର୍ଲାମେଣ୍ଟ ସଦସ୍ୟମାନଙ୍କୁ ନେଇ ଏକ କମିଟି ଗଢାଯିବାକୁ ଦାବୀ କରିଛନ୍ତି । କେତେକଙ୍କର ମତ ହେଲା—କ୍ରୀଡ଼ାଦି ବ୍ୟାପାର ସମ୍ପର୍କରେ ଜାତୀୟ ପରିକଳ୍ପନା ରଚନା ଏବଂ କେନ୍ଦ୍ରରେ ପୃଥକ ଏକ କ୍ରୀଡ଼ା ମନ୍ତ୍ରଣାଳୟ ସ୍ଥାପନ କରାଯାଉ । ସଂସଦୀୟ ପରାମର୍ଶ କମିଟିରେ ମଣ୍ଟ୍ରିଲ ବ୍ୟର୍ଥତାରେ ମର୍ମାହତ ହୋଇ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ କହିଛନ୍ତି—ଦେଶର ସାମଗ୍ରିକ ସ୍ୱାସ୍ଥ୍ୟ ଏବଂ ଯୁବକଯୁବତୀଙ୍କର ଶାରୀରିକ ପଟୁତା ଅର୍ଜନ ଦିଗରେ ଲକ୍ଷ୍ୟରଖି ଆମର ଜାତୀୟ କ୍ରୀଡ଼ା ପରିକଳ୍ପନା ରଚନା କରିବା ଉଚିତ ।

ହୁଏତ ସବୁ ଘଟଣାର ତଦନ୍ତ ହେବ । ହୁଏତଃ ଅତଃପର କ୍ରୀଡ଼ା ଦିଗରେ କିଛି ଯୋଜନା କାର୍ଯ୍ୟକାରୀ ହେବ । ମାତ୍ର ଆମ ମନରେ ଗୋଟିଏ ଶୋଚନା ବାରଂବାର ଆଘାତ ଦେଉଛି—ଷାଠିଏ କୋଟି ଲୋକଙ୍କ ଦେଶ ଭାରତବର୍ଷ ଗୋଟିଏ ହେଲେ ଖେଳରେ ଗୋଟିଏ ହେଲେ ବ୍ରୋଂଜ ପଦକ ପାଇଲା ନାହିଁ । ଅଥଚ ମାତ୍ର ଦେଢ଼ କୋଟି ଲୋକଙ୍କ ଦେଶ ପୂର୍ବ ଜର୍ମାନୀ ୪୦ଟି ସ୍ୱର୍ଣ୍ଣ, ୨୫ଟି ରୌପ୍ୟ, ୨୫ ଟି ବ୍ରୋଂଜ୍—ସାଏ ମୋଟ ନବେଟି ପଦକ ପାଇ ଗର୍ବ ଗୌରବରେ ଛାତି ଫୁଲାଇ ଫେରିଲା ! ଖାଲି ପୂର୍ବ ଜର୍ମାନୀ ନାହିଁ କି ଅନେକ ଛୋଟ ଛୋଟ ଦେଶ ମଧ୍ୟ ଦୁଇ ହାତରେ ମାଲ ମାଲ ସୁନା ଟୁଙ୍ଗାଇ

ପଦକ ପାଇ ମଂଟ୍ରିଲ ପ୍ରାଙ୍ଗଣରେ ଗାଲଭ୍ରସ ବଜାଇ ଫେରିଲେ । ଆଉ ଆମ ଖେଳାଳୀମାନେ ତଳକୁ ମୁହଁ ପୋତି ଶୂନ୍ୟମନରେ ମା' କୋଳକୁ ଫେରି ଆସି କହିଲେ—ମାଆ ଲୋ ! ଆମକୁ କିଛି ମିଳିଲାନାହିଁ ।

ଆମର ବର୍ତ୍ତମାନ ଦେଖିବାର କଥା—ଅନ୍ୟାନ୍ୟ ସମାଜତାନ୍ତ୍ରିକ ଦେଶଗୁଡ଼ିକରେ ଏହି କ୍ରୀଡ଼ା ବ୍ୟବସ୍ଥା କିପରି ସୁବେ ପରିଚାଳିତ ହେଉଛି । ଆନ୍ତର୍ଜାତିକ କ୍ରୀଡ଼ା ପ୍ରତିଯୋଗିତାରେ ଯୋଗ ଦେବାକୁ ହେଲେ ଯେଉଁ ଅନଳସ ପ୍ରୟାସ, ଅଦମ୍ୟ ମନୋବଳ, ଅଟୁଟ ସ୍ୱାସ୍ଥ୍ୟ ଏବଂ ଐକାନ୍ତିକ ନିଷ୍ଠାର ପ୍ରୟୋଜନ ତାହା ଆମ ଯୁବକ ଯୁବତୀମାନଙ୍କର ଅଛି କି ? ସେମାନଙ୍କ ଲାଗି ଆମେ ଉପଯୋଗୀ ସୁଯୋଗ ସୃଷ୍ଟି କରିଛୁ କି ? ଖେଳପଡ଼ିଆ, ଷ୍ଟାଡ଼ିୟମ୍, ଜିମ୍ନାସିଅମ୍, ସନ୍ତରଣ ପୁଷ୍କରିଣୀ, କୁସ୍ତି ଆଖଡ଼ା, ଆଥଲେଟିକ୍ସ ଟ୍ରାକ୍‌ମାନ ଯଥେଷ୍ଟ ଭାବେ ଆମେ ଦେଶସାରା ଯୋଗାଇ ଦେଲୁଣି କି ? କ୍ରୀଡ଼ା ଉପକରଣମାନ ଓ କ୍ରୀଡ଼ା ଶିକ୍ଷଣ ପଦ୍ଧତି ଆମର ଯଥେଷ୍ଟ ଆଧୁନିକ ଓ ବିଜ୍ଞାନ ସମ୍ମତ କି ?

ଅବଶ୍ୟ ଏବେ କେନ୍ଦ୍ର ଓ ରାଜ୍ୟ ସରକାରମାନେ କ୍ରୀଡ଼ା ଉପରେ ଈଷତ୍ ସଜାଗ ଓ ସକ୍ରୀୟ ହୋଇ ଉଠିଛନ୍ତି । ଖେଳ ଲାଗି ଅର୍ଜୁନ ପୁରସ୍କାର ଓ ପଦ୍ମଶ୍ରୀ ଆଦି ଉପାଧି ଦିଆଯାଉଛି । ଖେଳ ବୃତ୍ତି ମଧ୍ୟ ବ୍ୟବସ୍ଥା ହେଲାଣି । ଏହା ଅବଶ୍ୟ ଯଥେଷ୍ଟ ନୁହେଁ । ଓଡ଼ିଶା ସରକାର ମଧ୍ୟ ସବୁ ଜିଲ୍ଲାରେ କ୍ରୀଡ଼ା ବସ୍ତିଗମାନ ଖୋଲିଲେଣି । କିନ୍ତୁ ସେତିକିର ସୁଯୋଗ ନେବାକୁ ମଧ୍ୟ କାହାନ୍ତି ଆମର ଟେଲୁଆଡ଼ ଯୁବକ ଯୁବତୀଗଣ ? ରାସ୍ତାଘାଟ ଓ ସିନେମା ପାଖେ ଯୁବସମ୍ପ୍ରଦାୟର ଗାଠିଏ ଭିଡ଼ ବାଇଶୁଙ୍ଗୀ ଭଳି ବୁଲୁଥିବେ—ଆଉ କେତେକ ରାଜନୀତିକ ଦଳ ପଛରେ ପଡ଼ିଥିବେ । ସ୍କୁଲ, କଲେଜ ପଢ଼ୁଆମାନଙ୍କରେ ଆଉ ଖେଳାଳୀମାନଙ୍କୁ ଦେଖି ଯାଉନାହିଁ । ଯୁବାଯୁବତୀମାନେ ଗାଁ ସହରର ନଈ ପୋଖରୀରେ ପହଁରି ନାହାନ୍ତି । ସାଇକେଲରେ ୮ । ୧୦ କିଲୋମିଟର ବାଟ ଯିବାକୁ ମଧ୍ୟ ସେମାନେ ପରାଙ୍ମୁଖ ।

କ'ଣ ଅଭାବ ? ଖାଦ୍ୟ ? ସ୍ୱାସ୍ଥ୍ୟ ? ଉଦ୍ଦୀପନା ? ଉଦ୍ଦାମତା ? ଆତ୍ମ ବିଶ୍ୱାସ ? ଦେଶ ପ୍ରୀତି ? ଶକ୍ତି ଆରାଧନା ?

ଆମ ଯୁବକ ଯୁବତୀଙ୍କର ସବୁ ଉଦ୍ଦାମତା ଓ ଶକ୍ତି ସାମର୍ଥ୍ୟ କଣ କେବଳ ଗଣେଶ ପୂଜା, ସରସ୍ୱତୀ ପୂଜା ମଣ୍ଡପ ପାଖେ ଦିନସାରା ଉଚ୍ଚକିତ ନାଦରେ ମାଇକ୍ ବଜାଇ ନାଚ ନାଚ ଶେଷ ହୋଇଯିବ ? ସାଇ ସାଇ ପିଲ୍ଲକଳାର ମାରପିଟରେ ଖର୍ଚ୍ଚ ହୋଇଯିବ ? ନିର୍ଲଜ ସିନେମାରେ ଲଙ୍ଗଳାଲଙ୍ଗୁଳୀଙ୍କ କୁସ୍ତାକୁସ୍ତି ପ୍ରସଙ୍ଗ ଦେଖି ଦେଖି ଯିବ ? ନଚୁଆ ଟାଉଟରମାନଙ୍କ ପିଛାଧରି ମିଥ୍ୟା କୁହାଟ ମାରାମାରି ଯିବ ? ଏ ଦେଶରେ କଣ ଆଉ ଭରତ, ଅର୍ଜୁନ, ଏକଲବ୍ୟ, କର୍ଣ୍ଣ, ଅଭିମନ୍ୟୁ, ଦୁର୍ଗାବତୀ, ଅହଲ୍ୟାବାଈ ଆଦି ଶୌର୍ଯ୍ୟବନ୍ତ ଯୁବକଯୁବତୀ ବାହାରିବେ ନାହିଁ ?

ମହାପାତ୍ର ନୀଳମଣି ସାହୁ

●






# ପୃଥିବୀ ଦେବୀ ହିଁ ଦେବୀ ଦୁର୍ଗା

ଶ୍ରୀ [illegible]

କେବଳ ଭାରତ କାହିଁକି ପୃଥିବୀର ବିଭିନ୍ନ ଦେଶରେ ମାତୃ ପୂଜା ପୁରାତନ । ଆଦିମ ସଭ୍ୟତାରେ ମାତୃ ପୂଜାକୁ ବିଭିନ୍ନ ପ୍ରକାର ସୂତ୍ରପାତ ହୋଇଛି ବୋଲି ଧାରଣା କରାଯାଏ । ଏହି ମାତୃ ପୂଜା ପ୍ରଥମେ ପୃଥିବୀ ଦେବୀ ବା ବସୁଧା ମାତା ପୂଜାରୁ ଆରମ୍ଭ । ବୈଦିକ ସଭ୍ୟତା ପୂର୍ବରୁ ଯେଉଁ ସଭ୍ୟତା ଥିଲା ତାହା ବର୍ତ୍ତମାନର ଆବିଷ୍କୃତ ହରପ୍ପା ଓ ମହେଞ୍ଜୋଦାରୋରେ ବିସ୍ତୃତ ମୂର୍ତ୍ତି ସମୂହରୁ ଜଣାଯାଏ । ଏହି ମୂର୍ତ୍ତି ମଧ୍ୟରୁ ବହୁ ସ୍ତ୍ରୀ ମୂର୍ତ୍ତି ଦେଖିବାକୁ ମିଳେ । ବହୁ ଐତିହାସିକ ତଥା ଗବେଷକ ଏହି ସ୍ତ୍ରୀ ମୂର୍ତ୍ତି ମଧ୍ୟରୁ କେତେକ ମୂର୍ତ୍ତିକୁ ମାତୃ ମୂର୍ତ୍ତି ବୋଲି ନିର୍ଦ୍ଦେଶ କରନ୍ତି । ବର୍ତ୍ତମାନ ପରିଦୃଷ୍ଟ ହେଉଥିବା ମାତୃ ରୂପ ସେହି ସବୁ ରୂପରୁ ଆରମ୍ଭ ହୋଇଛି ବୋଲି ଧାରଣା କରାଯାଏ । ଏହି ମାତୃ ମୂର୍ତ୍ତି ମଧ୍ୟରୁ କେତେକ ବସୁଧା ମାତାର ମୂର୍ତ୍ତି ରହିଛି । ଗୋଟିଏ ମାତୃ ମୂର୍ତ୍ତିର କ୍ରୋଡ଼ ଦେଶରୁ ବୃକ୍ଷ ବା ଲତା ବହିର୍ଗତ ହେବା ଦେଖାଯାଏ । ବର୍ତ୍ତମାନ ଭଳି ସେତେବେଳେ ମଧ୍ୟ ଶସ୍ୟୋତ୍ପାଦିନୀ ପୃଥିବୀକୁ ମାତୃ ରୂପେ ଧାରଣା କରା ହେଉଥିବ । ଏହି ଚିତ୍ରରୁ ସୁସ୍ପଷ୍ଟ । ମଣିଷଙ୍କ ଭଳି ପୃଥିବୀ ମାତା ମଧ୍ୟ ଉତ୍ପାଦିକା ହେବା କଥାକୁ ବହୁପୂର୍ବେ ବିଶ୍ୱାସ କରାଯାଉଥିଲା । ସେଥିପାଇଁ ଯେଉଁ ଆବହମାନ କାଳରୁ ଓଡ଼ିଶାରେ ରଜ ପର୍ବ ପାଳିତ ହୋଇ ଆସିଛି । ପରବର୍ତ୍ତୀ କାଳରେ ବସୁମାତା ବିଭିନ୍ନ ଦେବୀ ରୂପେ ଆତ୍ମ ପ୍ରକାଶ କରିଥିବା ବିଶ୍ୱାସ କରାଯାଏ । ବିଶେଷତଃ ଦେବୀ ଦୁର୍ଗା ଜନନୀ ପୃଥିବୀର ଅନ୍ୟ ରୂପ । ସପ୍ତଶତୀ ଚଣ୍ଡୀରେ ମହାରାଜା ସୁରଥ ମେଧସ ଋଷିଙ୍କୁ ମହାମାୟାଙ୍କ ସ୍ୱରୂପ ଜିଜ୍ଞାସା କରିଛନ୍ତି । ତା'ର ଉତ୍ତରରେ ମେଧସ କହିଥିଲେ 'ନିତ୍ୟୈବ ସା ଜଗନ୍ମୂର୍ତ୍ତି' ସେ ନିତ୍ୟ । ଅର୍ଥାତ୍ ଜନ୍ମ ମୃତ୍ୟୁ ରହିତା ପୁଣି ତା'ର ସ୍ୱରୂପ, 'ବିଶ୍ୱରୂପା' ବା ଜଗତ ରୂପା । ଅତ ମଧ୍ୟ ମହେଞ୍ଜୋଦାରୋ ସଭ୍ୟତାରେ ଯେଉଁ ନାରୀ ମୂର୍ତ୍ତି କ୍ରୋଡ଼ ଦେଶରୁ ଲତା ବା ବୃକ୍ଷ ବହିର୍ଗତ ହୋଇଛି, ସେହି କଥା ସପ୍ତଶତୀ ଚଣ୍ଡୀରେ ଦେବୀ ମଧ୍ୟ କହିଛନ୍ତି ।

ତତୋଽହମଖିଳଂ ଲୋକମାତ୍ମଦେହ ସମୁଦ୍ଭବୈଃ ।
ଭରଷ୍ୟାମି ସୁରାଃ ଶାକୈରାବୃଷ୍ଟେଃ ପ୍ରାଣଧାରକୈଃ ॥ (ଚଣ୍ଡୀ ୧୧-୪୮ )

ଅର୍ଥାତ୍ ଅନନ୍ତର ମୁଁ ନିଜ ଦେହ ଜାତ ଜୀବନ ଧାରକ ପଦାର୍ଥ ଶାକ ଦ୍ୱାରା ଯେତେଦିନ ପର୍ଯ୍ୟନ୍ତ ଅନାବୃଷ୍ଟି ହେବ ସେତେଦିନ ପର୍ଯ୍ୟନ୍ତ ସମଗ୍ର ବିଶ୍ୱକୁ ପାଳନ କରିବି । ସେତେବେଳେ ବିଶ୍ୱରେ ମୁଁ ଶାକମ୍ଭରୀ ନାମରେ ବିଖ୍ୟାତ ହେବି । ତେଣୁ ଦେବୀ ଦୁର୍ଗା ପୃଥିବୀ ମାତାର ଅନ୍ୟରୂପ । ବୈଦିକ ଯୁଗରେ ବୈଦିକ ଋଷି ଏହି ପୃଥିବୀ ମାତା ବିଷୟ ବେଦରେ ବର୍ଣ୍ଣନା କରିଛନ୍ତି । ବୈଦିକ ଋଷି ଯେଉଁଠାରେ ପୃଥିବୀ ଜନନୀ କଥା ଉଲ୍ଲେଖ କରିଛନ୍ତି ଠିକ ସେହିଠାରେ ଆକାଶ ରୂପି ପିତା । ଦ୍ୟୌର କଥା ମଧ୍ୟ ମୁକ୍ତ କଣ୍ଠରେ ଗାଇଛନ୍ତି । ମାତା ପୃଥିବୀ ସହିତ ପିତାଦ୍ୟୌ ରହିଥିଲେ ମଧ୍ୟ, ସେ ପ୍ରାଣଦାୟିନୀ, ଅନ୍ନ ଦାୟିନୀ, ପୁନ୍ୟ ଦାୟିନୀ ମାତା । ପୃଥିବୀକୁ ସ୍ତୁତ କରି ଆର୍ଯ୍ୟ ଋଷି ପ୍ରାର୍ଥନା କରିଛନ୍ତି-ତାଙ୍କର ସନ୍ତାନମାନଙ୍କୁ ଯଥେଷ୍ଟ ଶସ୍ୟ, ଯଥେଷ୍ଟ ଅନ୍ନ ଓ ଧନ ଦାନ କରିବାକୁ । ପୃଥିବୀ ବିଷୟକ ସୁକ୍ତଗୁଡ଼ିକ ପାଠ କଲେ ସ୍ୱତଃ ମନେ ହୋଇଥାଏ ପୃଥିବୀ ଜନନୀ ଯେପରି ଆର୍ଯ୍ୟ ଋଷିଙ୍କର ସମସ୍ତ ପ୍ରକାର ମଙ୍ଗଳଦାୟିନୀ । ସୁଖ ଶାନ୍ତି, ଐଶ୍ୱର୍ଯ୍ୟ-ପ୍ରାଚୁର୍ଯ୍ୟ, ଶୌର୍ଯ୍ୟ-ବୀର୍ଯ୍ୟ, ସନ୍ତାନ ଓ ସୌଭାଗ୍ୟ ଯେପରି ପୃଥିବୀର ସଦିଚ୍ଛାରେହିଁ ଲାଭ ହୋଇ ପାରିବ । ବିକଳ କଣ୍ଠରେ ଆର୍ଯ୍ୟ ଋଷି ମହାପାପରୁ ଉଦ୍ଧାର କରି ସନ୍ତାନ ଭଳି ପାଳନ କରିବାକୁ ଯେଉଁଭଳି ହୃଦୟସ୍ପର୍ଶୀ ଗୀତ ଗାଇ ଉଠିଛନ୍ତି, ସେହିଭଳି ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ କହିଛନ୍ତି—ଜନନୀରୂପା ବସୁନ୍ଧରା ପୃଥିବୀ ନିକଟ ଗମନ କରି ତା କୋଳରେ ଶୟନ କରିବାକୁ ପୁଣି ପୃଥିବୀ ମାତାକୁ କହିଛନ୍ତି—"ହେ ପୃଥିବୀ, ତୁମେ ଏହି ମୃତକୁ ପୀଡ଼ାହୀନ କରି" ଉନ୍ମୁକ୍ତ କରି ରଖ । ଋଗ୍ ବେଦରେ ପୃଥିବୀ ମାତାକୁ ଦିତି ଏବଂ ଅଦିତି ବୋଲି କୁହା ହୋଇଛି । ଦିତି ଅର୍ଥରେ ଆର୍ଯ୍ୟ ଋଷି ଧାରଣା କରିଛନ୍ତି ଖଣ୍ଡ ବା ସୀମାଯୁକ୍ତ ବିଶ୍ୱ ଏବଂ ଅଦିତି ଅର୍ଥରେ ଅଖଣ୍ଡ ବା ସୀମାହୀନ ବିଶ୍ୱ । ଆଦିତ୍ୟ ବା ସୂର୍ଯ୍ୟ ଅଦିତିର ପୁତ୍ର ବୋଲି ଆର୍ଯ୍ୟ-ଋଷିଙ୍କର ଧାରଣା । ପ୍ରତିଦିନ ପ୍ରାତଃ ସମୟରେ ଆଦିତ୍ୟ ଅଦିତି ଗର୍ଭରୁ ଆତ୍ମ ପ୍ରକାଶ କରନ୍ତି । ବୈଦିକ ଯୁଗ ପରେ ଯେତେବେଳେ ଉପନିଷଦ ଯୁଗ ଆରମ୍ଭ ହେଲା ସେତେବେଳେ ଗର୍ବିତ ସନ୍ତାନ ଦେବଗଣଙ୍କ ନିକଟରେ ଜଗଜ୍ଜନନୀ ଉମା ହୈମବତୀ ବ୍ରହ୍ମ ରୂପେ ଦେଖା ଦେଲେ । ଏହି ଉମାହିଁ ପୌରାଣିକ ଯୁଗରେ ହିମାଳୟ ଘରେ କନ୍ୟା ରୂପେ ଅବତୀର୍ଣ୍ଣ ହେଲେ । ତତ୍ ପୂର୍ବରୁ ସେ ଥିଲେ ଆର୍ଯ୍ୟ ଦୁହିତା ସତୀ ଯେଉଁ ସତୀ ପିତାଳୟ ଯିବାପାଇଁ ସ୍ୱାମୀ ଶିବଙ୍କୁ ଦଶମହାବିଦ୍ୟା ପ୍ରଦର୍ଶନ କରି ଚମତ୍କୃତ କରି-ଥିଲେ, ସେହି ସତୀ ପତି ନିନ୍ଦା ସହି ନ ପାରି ପିତା ଦକ୍ଷଙ୍କ ଯଜ୍ଞ କୁଣ୍ଡରେ ପତିତ ହୋଇ ଆତ୍ମ ବିସର୍ଜନ ଦେଇଥିଲେ । ସେହି ଦଶମହାବିଦ୍ୟାର ଶେଷ ମହାବିଦ୍ୟା କମଳାତ୍ମିକା । କମଳାହିଁ ଲକ୍ଷ୍ମୀ ବା ଶ୍ରୀ ଲକ୍ଷ୍ମୀ ଶସ୍ୟ ଅଧିଷ୍ଠାତ୍ରୀ ଦେବୀ । ପୁରାଣମାନଙ୍କରେ ଲକ୍ଷ୍ମୀ ନାରାୟଣଙ୍କ ପତ୍ନୀ ଭାବେ ବର୍ଣ୍ଣିତା । ସପ୍ତଶତୀ ଚଣ୍ଡୀରେ ଦେବତାମାନେ ଦେବୀ ଦୁର୍ଗାଙ୍କୁ ସ୍ତବ କରି 'ନାରାୟଣୀ ନାମୋଽସ୍ତୁତେ' ବୋଲି କହି ପ୍ରଣାମ କରିଛନ୍ତି । ଦେବତାମାନେ, ତାଙ୍କୁ ପୃଥିବୀ ରୂପା ବୋଲି ମଧ୍ୟ କହିଛନ୍ତି—ଆଧାରଭୂତା ଜଗତସ୍ତ୍ୱମେକା ମହୀସ୍ୱରୂପେଣ ଯତଃ ସ୍ଥିତାସି ( ୧୧-୪ ଚଣ୍ଡୀ ) ଅର୍ଥାତ ତୁମେ ପୃଥିବୀରୂପେ ବିରାଜିତ ବୋଲି ଜଗତର ଆଶ୍ରୟ ରୂପା ।

ପୃଥିବୀ ଦେବୀର କ୍ରମ ବିକାଶ ଫଳରେ ବିଭିନ୍ନ ସମୟରେ ବିଭିନ୍ନ ନାମରେ ସେ ନାମିତା । ଦୁର୍ଗା ଦେବୀ ଯେ ପୃଥିବୀ ଦେବୀଙ୍କ ଅଭିନ୍ନ ରୂପ ଏହା ନିଃସନ୍ଦେହ । ଦୁର୍ଗା ପୂଜାରେ ନବ ପତ୍ରିକା ପ୍ରଚଳନ ଅଛି । ଓଡ଼ିଶାର ପୀଠ ଦେବୀମାନଙ୍କ ନିକଟରେ ମୂଳାଷ୍ଟମି ଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ଷୋଳ ଦିନ ବ୍ୟାପୀ ମହା ପୂଜା ଅନୁଷ୍ଠିତ ହୋଇଥାଏ । ମାତ୍ର ବଙ୍ଗ ଦେଶରେ ଷଷ୍ଠୀଠାରୁ ଦଶମୀ ପର୍ଯ୍ୟନ୍ତ ପୂଜା ହୋଇଥାଏ । ଷଷ୍ଠୀ ରାତ୍ରରେ ସେମାନଙ୍କର ବିଲ୍ୱ ବୃକ୍ଷ ବୋଧନର ବିଧି ଅଛି । ସବୁ ଅଞ୍ଚଳରେ ବୋଧନ ପରେ ବିଲ୍ୱ ଶାଖା ଛେଦନ କରି ନବପତ୍ରିକା ସହିତ ପୂଜା ମଣ୍ଡପରେ ପ୍ରବେଶ କରିବାକୁ ହୁଏ । ନବ ପତ୍ରିକା ଦେବୀ ଦୁର୍ଗାଙ୍କର ପ୍ରତିନିଧି । ନବ ପତ୍ରିକାର ଚତୁର୍ଦ୍ଦିଗରେ ଶ୍ୱେତ ଅପରାଜିତାର ଲତା ଓ ହରିଦ୍ରାକ୍ତ ଡୋର ଦ୍ୱାରା ବନ୍ଧନ କରିବାକୁ ହୋଇଥାଏ । ଏହି ନବ ପତ୍ରିକା ହେଉଛି, "ରମ୍ଭା, କଚ୍ଚୀ, ହରିଦ୍ରାଚ ଜୟନ୍ତୀ ବିଲ୍ୱ ଦାଡ଼ିମୌ ଅଶୋକା, ମାନକା ଶ୍ଚୈବ ଧାନ୍ୟଞ୍ଚ ନବପତ୍ରିକା" କଦଳୀ, ସାରୁ, ହରିଦ୍ରା, ଜୟନ୍ତୀ, ବେଲ, ଡାଳିମ୍ବ ଅଶୋକ, ମହୁଣ, ଧାନ ଗଛ ଏକତ୍ର କରି ପୂଜା କରିବା ଦୃଷ୍ଟେ ଦେବୀ ଦୁର୍ଗା ଶସ୍ୟାଧିଷ୍ଠାତ୍ରୀ ପୃଥିବୀ ଦେବୀ ବୋଲି ବୁଝାଯିବ । ଶ୍ରୀରାମଚନ୍ଦ୍ର ନବ ରାତ୍ର ପୂଜା କରିଥିବା ହେତୁ ଆଶ୍ୱିନ ଅମାବାସ୍ୟା ଠାରୁ ଆଶ୍ୱିନ ଶୁକ୍ଳ ନବମୀ ପର୍ଯ୍ୟନ୍ତ ଭାରତର ବିଭିନ୍ନ ଅଞ୍ଚଳରେ ନବ ରାତ୍ର ପୂଜା ଅନୁଷ୍ଠିତ ହୁଏ । ନବ ପତ୍ରିକା ପ୍ରଚଳନ ସବୁ ଅଞ୍ଚଳରେ ଦେବୀ ପୂଜାରେ ସ୍ଥାନ ପାଇ ଆସିଛି ।

ତତ୍ପରେ ବ୍ରହ୍ମାଙ୍କ ତେଜ ସହିତ ସମସ୍ତ ଦେବତାଙ୍କ ତେଜ ଏକତ୍ର ମିଳିତ ହୋଇ ଯେତେବେଳେ ଦେବୀ ଦୁର୍ଗା ଆବିର୍ଭୂତା ହେଲେ ସେତେବେଳେ ଦେବତାମାନେ ଦେବୀଙ୍କୁ ସେମାନଙ୍କର ବାହନ ସହିତ ଅସ୍ତ୍ରଶସ୍ତ୍ର ପ୍ରଦାନ କରିଥିଲେ । ସେହି ଅସ୍ତ୍ର ଶସ୍ତ୍ର ଧରି ଦେବୀ ଦୁର୍ଗା ମହିଷାସୁରର ସୈନ୍ୟବଳ ସହିତ ମହିଷାଙ୍କୁ ମଧ୍ୟ ବଧ କଲେ । ଏହାହିଁ ପ୍ରକୃତି ମାତାର ଦୁଇଟି ରୂପ । ଗୋଟିଏ ସାତ୍ତ୍ୱିକର ପ୍ରତୀକ ଦେବୀ ଦୁର୍ଗା ଅନ୍ୟଟି ତାମସିକର ପ୍ରତୀକ ମହିଷାସୁର । କିନ୍ତୁ ମହିଷାସୁର ସମସ୍ତଙ୍କୁ ପ୍ରକୃତି ଠାରୁ ସାତ୍ତ୍ୱିକ ଗୁଣର ଉଦ୍‌ଭବ ହୋଇ ନାହିଁ । କାଳାନୁସାରେ ପ୍ରକୃତି ଜନନୀ ପ୍ରଥମେ ତମ ଗୁଣର ଶକ୍ତି ଦ୍ୱାରା ମହା କାଳିକା ରୂପ ଧାରଣ କରି ମହାବିଷ୍ଣୁଙ୍କୁ ନିଦ୍ରାଭିଭୂତ କରିଥିଲେ । ତତ୍ପରେ ରଜ ଗୁଣ ଦ୍ୱାରା ନିଜର ସମସ୍ତ ସୃଷ୍ଟିଗତ ଶକ୍ତିକୁ ତେଜୋପୁଞ୍ଜୀଭୂତା ହୋଇ ଦେବୀ ଦୁର୍ଗା ରୂପେ ଆବିର୍ଭୂତା ହେଲେ ଏବଂ ଶେଷରେ ଶୁମ୍ଭ ନିଶୁମ୍ଭଙ୍କ ବଧ ପାଇଁ ମହାସରସ୍ୱତୀ ରୂପେ ସତ୍ତ୍ୱଗୁଣାତ୍ମିକା ହୋଇଥିଲେ । ପ୍ରକୃତି ଠାରୁ ସବୁ ଗୁଣ ଜାତ ହୋଇ ତାର ସନ୍ତାନଙ୍କୁ ସେହି ସେହି ଗୁଣାଧିକାରୀ କରିଥାଏ । ବୈଦିକ ଦୃଷ୍ଟି ଦେଇ ଯେବେ ପ୍ରକୃତି ମାତାକୁ ସନ୍ତାନ ବତ୍ସଳା କରିଛି ଉପାସନା । ତାହାର ଅନ୍ୟ ରୂପ ଦେବୀ ଦୁର୍ଗାଙ୍କୁ ସନ୍ତାନ ବତ୍ସଳା କରିବାରେ ତ୍ରୁଟି କରି ନାହାନ୍ତି । ମଦ୍ୟ, ମତ୍ସ୍ୟ, ମାଂସରେ ପୂଜିତା ଦେବୀ ଅନ୍ତରରେ ଯେଉଁ ସନ୍ତାନ ବାତ୍ସଲ୍ୟ ନିହିତ ସେହି ତନ୍ତ୍ର ଶାସ୍ତ୍ରରେ ଦେଖିବାକୁ ମିଳେ ତାହା ଯେ ବୈଦିକ ଶାସ୍ତ୍ର ଠାରୁ ନ୍ୟୂନ ଏହା କେବେ ନୁହେଁ ।

ସମସ୍ତ ତନ୍ତ୍ର ଶାସ୍ତ୍ରର ଆଧାର ଚଣ୍ଡୀ । ଚଣ୍ଡୀର ପ୍ରଥମ ଚରିତ୍ରରେ ମଧୁକୈଟଭଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ବ୍ରହ୍ମା ନିଜର ରକ୍ଷାର୍ଥେ ମହାବିଷ୍ଣୁଙ୍କୁ କାତର ପ୍ରାର୍ଥନା କଲେ । କିନ୍ତୁ ସେତେବେଳେ ମହାବିଷ୍ଣୁ ପ୍ରକୃତି ଜନନୀର ମହାତାମସିକ ରୂପ ମହାନିଦ୍ରାରେ ସୁପ୍ତ । ବ୍ରହ୍ମା ଅନୁଭବ କଲେ ଏଠାରେ ବିଷ୍ଣୁ ନିମିତ୍ତ ମାତ୍ର । ତେଣୁ ସେ ଯୋଗନିଦ୍ରାଙ୍କୁ ସ୍ତୁତି କରିବାକୁ ଲାଗିଲେ । ସ୍ତୁତି ଶେଷରେ ସେହି ତାମସୀ ଦେବୀ ବ୍ରହ୍ମାଙ୍କ ଦୃଷ୍ଟି ଗୋଚର ହେଲେ ।

ଏବଂ ସ୍ତୁତା ତଦା ଦେବୀ ତାମସୀ ତତ୍ର ବେଧସା
ବିଷ୍ଣୋଃ ପ୍ରବୋଧନାର୍ଥାୟ ନିହନ୍ତୁ ମଧୁକୈଟଭୌ
ନେତ୍ରାସ୍ୟନାସିକାବାହୁହୃଦୟେଭ୍ୟସ୍ତଥୋରସଃ
ନିର୍ଗମ୍ୟ ଦର୍ଶନେ ତସ୍ଥୌ ବ୍ରହ୍ମଣୋଽବ୍ୟକ୍ତଜନ୍ମନଃ ( ୧-୮୯-୯୧ )

“ସେତେବେଳେ ତାମସୀ ଦେବୀ ବ୍ରହ୍ମାଙ୍କ ଦ୍ୱାରା ଏହିପରି ସଂସ୍ତୁତା ହୋଇ ମଧୁ ଓ କୈଟଭଙ୍କ ବିନାଶାର୍ଥେ ବିଷ୍ଣୁଙ୍କ ଯୋଗନିଦ୍ରା ଭଙ୍ଗପାଇଁ ବିଷ୍ଣୁଙ୍କ ନେତ୍ର, ମୁଖ, ନାସିକା, ବାହୁ, ହୃଦୟ ଏବଂ ବକ୍ଷସ୍ଥଳରୁ ନିର୍ଗତ ହୋଇ ବ୍ରହ୍ମାଙ୍କ ଦୃଷ୍ଟି ଗୋଚର ହେଲେ ।” ଯୋଗନିଦ୍ରା ବିଷ୍ଣୁଙ୍କୁ ତ୍ୟାଗକରି ଯିବାରୁ ବିଷ୍ଣୁ ମଧୁକୈଟଭଙ୍କୁ ଦୃଷ୍ଟି କଲେ । ଏଠାରେ ମଧୁକୈଟଭର ମଧ୍ୟ ଜନନୀର ସନ୍ତାନ । ମାତ୍ର ଏକ ଦୁଷ୍ଟ ସନ୍ତାନ କବଳରୁ ଶାନ୍ତ ସନ୍ତାନକୁ ରକ୍ଷାପାଇଁ ସୁପ୍ତ ବିଷ୍ଣୁଙ୍କୁ ଜାଗ୍ରତ କରାଇବା ଜନନୀର ଏକ ମହନୀୟ ଗୁଣ । ଜନନୀର ଏହିଗୁଣ ପରିସ୍ଫୁଟ ହୋଇଛି ଚଣ୍ଡୀର ଦ୍ୱିତୀୟ ଚରିତ୍ରରେ ମହିଷାସୁର ବଧରେ ।

ପ୍ରକୃତିର ବିଭିନ୍ନ ଶକ୍ତି ବିଭିନ୍ନ ରୂପର ପ୍ରତୀକ ଦେବତାମାନେ । ସେମାନେ ଯେତେବେଳେ ପ୍ରକୃତି ମାତାର ତାମସିକ ରୂପ ତଥା କ୍ରୋଧର ପ୍ରତୀକ ମହିଷାସୁର ଦ୍ୱାରା ଆକ୍ରାନ୍ତ ହେଲେ ସେତେବେଳେ ସେ ସମସ୍ତ ରୂପ ଶକ୍ତିକୁ ଏକତ୍ରିତ କରି ବିଶ୍ୱରୂପା ହୋଇ କାତ୍ୟାୟନ ମୁନିଙ୍କ ଆଶ୍ରମରେ ମହାଦେବୀ ଆବିର୍ଭୂତା ହେଲେ । ଦେବତାମାନେ ତାଙ୍କୁ ଜ୍ଞାପନ କଲେ ତାଙ୍କର ଦୁଃଖ । ମହାଦେବୀ ଦେବତାମାନଙ୍କର ଦୁଃଖ ଶ୍ରବଣ ପୂର୍ବକ ସେମାନଙ୍କୁ ଅଭୟଦାନ କରି ଅଟ୍ଟହାସ୍ୟ ଓ ହୁଁକାର ଦ୍ୱାରା ସମଗ୍ର ଆକାଶ ପରିପୂର୍ଣ୍ଣ କଲେ । ତାଙ୍କର ସିଂହନାଦରେ ଚତୁର୍ଭୁବନ ତଥା ସପ୍ତ ସମୁଦ୍ର ପ୍ରକମ୍ପିତ ହେଲା । ତାହା ଦେଖି ଦେବତାମାନେ ଜୟଧ୍ୱନି କରିବାକୁ ଲାଗିଲେ । ସେହି ଭୟଙ୍କର ଶବ୍ଦରେ ତ୍ରିଲୋକବାସୀ ସନ୍ତ୍ରସ୍ତ ହେବା ଦେଖି ମହିଷାସୁର ନିଜର ସୈନ୍ୟ ସୁସଜ୍ଜିତ କରି

ଶବ୍ଦ ଆସୁଥିବା ଦିଗକୁ ଧାବିତ ହେଲା । ଅନନ୍ତର ସେ ଦର୍ଶନ କଲା ଯାହାର ଅଙ୍ଗ ଜ୍ୟୋତିରେ ତ୍ରିଭୁବନ ଆଲୋକିତ, ଯାହାଙ୍କ ପଦଭରେ ପୃଥିବୀ ଅବନତ, ଯାହାର ଧନୁ ଟଙ୍କାରରେ ସପ୍ତଲୋକ ଆକୁଳିତ, ଯାହାଙ୍କ ସହସ୍ର କର ଦଶଦିଗ ପରିବ୍ୟାପ୍ତ ସେହି ଗଗନ ବ୍ୟାପୀ ମୂର୍ତ୍ତି ସମ୍ପନ୍ନା ଦେବୀ ଦୁର୍ଗାଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ସେମାନେ ଦେବୀଙ୍କ ସହିତ ସମର ଆରମ୍ଭ କରିଦେଲେ । ମହିଷାସୁର ସେନାପତି ଚାମର, ଉଦଗ୍ର, ଅସିଲୋମା, ବାଷ୍କଳାସୁର, ପରିବାରିତ ଓ ବିଡାଳାକ୍ଷ ପ୍ରଭୃତି ରାକ୍ଷସମାନେ ଏକ ସଙ୍ଗେ ଦେବୀଙ୍କୁ ଆକ୍ରମଣ କଲେ । ଦେବୀ ସେମାନଙ୍କୁ ବିଭିନ୍ନ ଅସ୍ତ୍ରରେ ଅସ୍ତ୍ରବ୍ୟସ୍ତ କରି ନିଜର ନିଶ୍ୱାସରୁ ଲକ୍ଷ ଲକ୍ଷ ଦେବୀସୈନ୍ୟ ଉତ୍ପନ୍ନ କରାଇ ତାଙ୍କଦ୍ୱାରା ମହିଷାସୁର ସୈନ୍ୟ ବଧ କରାଇଲେ । ନିଜେ ଦେବୀ ଓ ତାଙ୍କ ବାହନ ସିଂହ ବହୁ ସୈନ୍ୟ ସେନାପତିଙ୍କୁ ହତ କଲାପରେ ମହିଷାସୁର ସକ୍ରୋଧେ ଖୁରଦ୍ୱାରା ଭୂତଳ ବିଦୀର୍ଣ୍ଣକରି ନିଜର ଶୃଙ୍ଗଦ୍ୱାରା ଉଚ୍ଚ ପର୍ବତ ସବୁ ଦେବୀଙ୍କ ଉପରେ ନିକ୍ଷେପ କରିବାକୁ ଲାଗିଲା । ତାର ଭୟଙ୍କର ରୂପ ଦର୍ଶନ କରି ଦେବୀ କ୍ରୋଧଯୁକ୍ତା ହୋଇ ତା' ଉପରେ ପାଶ ନିକ୍ଷେପ ପୂର୍ବକ ବନ୍ଧନ କଲେ । ମହିଷ ତତ୍‌କ୍ଷଣାତ୍ ନିଜର ମହିଷରୂପ ଛାଡ଼ି ସିଂହରୂପ ଧାରଣ କଲା ଏବଂ ଦେବୀ ତାର ମସ୍ତକ ଛେଦନ କଲେ । ସଙ୍ଗେ ସଙ୍ଗେ ସେ ଏକ ଖଡ୍ଗଧାରୀ ପୁରୁଷ ରୂପେ ଆବିର୍ଭୂତ ହେଲା । ଦେବୀ ତାକୁ ବାଣ ଦ୍ୱାରା ବିଦ୍ଧକଲେ । ତାପରେ ସେ ଧାରଣକଲା ଏକ ହସ୍ତୀର ରୂପ । ଦେବୀ ତାର ଶୁଣ୍ଢ କର୍ତ୍ତନ କରନ୍ତେ ସେ ପୁନର୍ବାର ମହିଷରୂପଧରି ତ୍ରିଭୁବନକୁ ବିଦୀର୍ଣ୍ଣ କରିଦେଲା ।

ମହିଷାର ଉତ୍ପୀଡ଼ନ ଲକ୍ଷ୍ୟକରି ଦେବୀ ଉତ୍ତମ ସୁରାପାନ କରିବାକୁ ଲାଗିଲେ ଏବଂ ଆରକ୍ତ ନୟନାହୋଇ ଅଟ୍ଟହାସ କରିଉଠିଲେ । ରାକ୍ଷସ ମହିଷ । ଦୈହିକବଳ ଓ ମାନସିକ ଶକ୍ତି ଗର୍ବରେ ଉଦ୍ଧତ ହୋଇ ଗର୍ଜନ କଲା ଓ ଶୃଙ୍ଗଦ୍ୱାରା ଦେବୀଙ୍କ ଉପରକୁ ପର୍ବତମାନ ନିକ୍ଷେପ କରିବାକୁ ଲାଗିଲା । ଦେବୀ ସେହି ପର୍ବତକୁ ଶରଦ୍ୱାରା ନିବାରିତ କରି 'ମଦୋଦ୍ଧୃତ ମୁଖ ରାଗା' ମଦ୍ୟପାନ ଜନିତ ଆରକ୍ତମୁଖି ହୋଇ ରାକ୍ଷସକୁ ଅସ୍ପଷ୍ଟ ବାକ୍ୟରେ କହିଲେ

ଗର୍ଜ ଗର୍ଜ କ୍ଷଣଂ ମୂଢ଼ ମଧୁ ଯାବତ୍ ପିବାମ୍ୟହମ୍

ମୟା ତ୍ୱୟି ହତେଽତ୍ରୈବ ଗର୍ଜିଷ୍ୟନ୍ତ୍ୟାଶୁ ଦେବତା (ଚଣ୍ଡୀ ୩-୩୮) ରେ ମୂଢ଼ ଯେଉଁ ପର୍ଯ୍ୟନ୍ତ ମୁଁ ମଧୁ ପାନ କରୁଛି, ସେ ପର୍ଯ୍ୟନ୍ତ ତୁ ସେତିକି ଗର୍ଜନ କର ଗର୍ଜୁଥା ମୁଁ ତୋତେ ବଧ କଲେ ଇନ୍ଦ୍ରାଦି ଦେବତାମାନେ ଏଠାରେ ଆନନ୍ଦ ଧ୍ୱନି କରିବେ ।

ଓଡ଼ିଶାରେ ପୂଜିତ ହେଉଥିବା ଚାମୁଣ୍ଡା ଦେବୀହିଁ ଦେବୀଦୁର୍ଗାଙ୍କର ଏହି ସମସ୍ତର ରୂପ । ଓଡ଼ିଶାରେ ଦ୍ୱିଭୁଜା ଠାରୁ ଆରମ୍ଭକରି ଦଶଭୁଜା ପର୍ଯ୍ୟନ୍ତ ଚାମୁଣ୍ଡା ଦେବୀ ପୂଜିତା । ଓଡ଼ିଶାର ପ୍ରସିଦ୍ଧ ଦେବୀ ବାଙ୍କିର ଚର୍ଚ୍ଚିକା ଓ ଅସୁରେଶ୍ୱରର ହରଚଣ୍ଡୀ ଅଷ୍ଟଭୁଜା ଚାମୁଣ୍ଡା ରୂପା । ଦେବୀଙ୍କ ବାମହସ୍ତରେ ଏକ ପାନ ପାତ୍ର ଅଛି ଏବଂ ଏକ ଅଙ୍ଗୁଳିରେ ମଧୁ (ମଦ୍ୟ) ନେଇ ଦେବୀ ପାନ କରୁଛନ୍ତି । ଓଡ଼ିଶାରେ ଯେତେ ଅଷ୍ଟଭୁଜା ଦଶଭୁଜା ମହିଷ ମର୍ଦ୍ଦିନୀ ଦେବୀ ଦୁର୍ଗା ମୂର୍ତ୍ତି ପରିଦୃଷ୍ଟ ହୁଅନ୍ତି ସେତିକି ଅଷ୍ଟଭୁଜା ଚାମୁଣ୍ଡା ଓ ଦଶଭୁଜା ଚାମୁଣ୍ଡା ବିଭିନ୍ନ ସ୍ଥାନରେ ପୀଠ ଦେବୀ ଓ ପାର୍ଶ୍ୱ ଦେବୀ ରୂପେ ପୂଜିତା ।

ଦେବୀ ଦୁର୍ଗା ମଦ୍ୟପାନ କରିଥିବାରୁ ଉନ୍ମତ୍ତ ନିଜର ମାତୃତ୍ୱରୁ ଅପସରି ଗଲେ । ସେ ଯେ ବିଶ୍ୱର ଜନନୀ ଏହା ସେ ଭୁଲିଗଲେ । ସେ ଲମ୍ଫ ପ୍ରଦାନ ପୂର୍ବକ ମହିଷାସୁର ଉପରେ ଚଢ଼ି ତା'ର କଣ୍ଠଦେଶ ପଦଦ୍ୱାରା ନିପୀଡ଼ନକରି ତାହାର ବକ୍ଷରେ ଶୂଳାଘାତ କଲେ । ମହିଷାସୁର ଚଣ୍ଡିକାଙ୍କ ପଦଦ୍ୱାରା ଦୃଢ଼ଭାବେ ଆକ୍ରାନ୍ତ ହୋଇ ନିଜ ମୁଖରୁ ଅନ୍ୟ ଏକ ମହାସୁର ଅର୍ଦ୍ଧମାତ୍ର ବହିର୍ଗତ ହେବା ମାତ୍ରେ ସେ ଦେବୀଙ୍କ ଉଗ୍ରତେଜ ଦ୍ୱାରା ସ୍ତମ୍ଭୀଭୂତ ହେଲା । ସେ ଅର୍ଦ୍ଧ ନିଷ୍କ୍ରାନ୍ତ ରାକ୍ଷସ ଦେବୀଙ୍କ ସହିତ ଯୁଦ୍ଧ କରୁ କରୁ ଦେବୀଙ୍କ ଖଡ୍ଗ ଦ୍ୱାରା ନିହତ ହେଲା । ଏହିଠାରେ ଜଗନ୍ମୟୀ ଦେବୀଙ୍କର ଯେଉଁ ସନ୍ତାନ ବାତ୍ସଲ୍ୟ ଦର୍ଶାଇଛନ୍ତି ତାହା ଅତୀବ ଚମତ୍କାର । ଦେବୀଙ୍କର ମହିଷାସୁରକୁ ବଧ କରିବାପାଇଁ ସମସ୍ତ ଶକ୍ତି ଥିଲେ ମଧ୍ୟ ସନ୍ତାନ ବାତ୍ସଲ୍ୟ ତାଙ୍କୁ ଏପରି ମମତାଯୁକ୍ତ କରିଥିଲା ଯେ ସେ ବାଧ୍ୟ ହେଲେ

ଯାନପାତ୍ରରୁ ମଦ୍ୟ ପାନ କରିବାକୁ । ମଦ୍ୟପାନ ପରେ ସେ ସଂପୂର୍ଣ୍ଣ ଭୁଲିଗଲେ ନିଜକୁ ତଥା ନିଜର ମାତୃତ୍ୱକୁ । ସେ ନାରୀ ହେଲେ ମଧ୍ୟ ସବଳ ପୁରୁଷ ଉପରେ ଲମ୍ଫ ପ୍ରଦାନକରି ପାଦଦ୍ୱାରା ତାକୁ ଯେଉଁ ଭଳି ଉତ୍ପୀଡନ କରିଛନ୍ତି ତାହା ମଦ୍ୟପାନ ପର ଅବସ୍ଥା ବ୍ୟତୀତ କେବେ ତୁଳନାକର ହେବ ନାହିଁ । ସେଥିପାଇଁ ମହିଷାସୁର ବଧରେ ଦେବୀ ଦୁର୍ଗାଙ୍କୁ ଦେବତାମାନେ ସ୍ତୁତି କରିବାକୁ ଅସି ଗାଇଛନ୍ତି—

କେନୋପମା ଭବତୁ ତେଽସ୍ୟ ପରାକ୍ରମସ୍ୟ
ରୂପଞ୍ଚ ଶତ୍ରୁଭୟ କାର୍ଯ୍ୟତିହାରି କୁତ୍ର
ଚିତ୍ତେ କୃପା ସମର ନିଷ୍ଠୁରତା ଚ ଦୃଷ୍ଟା
ତ୍ୱୟ୍ୟେବ ଦେବି ବରଦେ ଭୁବନ ତ୍ରୟେଽପି ॥ ୪—୨୨

"ଦେବି ! ଆଉ କାହା ସହିତ ତୁମର ଏହି ପରାକ୍ରମର ତୁଳନା ହୋଇପାରେ ? ତୁମ ଅତୁଳନୀୟ ରୂପ ଶତ୍ରୁଭୟଜନକ, ଅଥଚ ଏତେ ମନୋରମ ରୂପ ବା କାହାର ଅଛି ? ହେ ବରଦେ, ଚିତ୍ତରେ ଅସୀମ କୃପା ତୁମର ଥିଲେ ମଧ୍ୟ ସମରବେଳେ ନିଷ୍ଠୁରତା ଏ ବିଶ୍ୱରେ ଏକା ତୁମଠାରେ ଦୃଶ୍ୟ ହୁଏ ।"

ଭାରତୀୟ ସଂସ୍କୃତିରେ ଯେ କେବଳ ମାତୃ ଉପାସନା ଅଛି ଏହା ନୁହେଁ । ପୃଥିବୀର ବିଭିନ୍ନ ଦେଶରେ ପୃଥିବୀ ମାତାର ଉପାସନା ଦେଖିବାକୁ ମିଳେ । କିନ୍ତୁ ଭାରତୀୟ ସଂସ୍କୃତିରେ ଏହି ମାତୃ ଉପାସନା ଯେତେ ଘୋର, ଯେତେ ସୁଦୃଢ଼ ତାହା ଅନ୍ୟାନ୍ୟ ଦେଶରେ ସେତେ ନୁହେଁ । ପ୍ରାଚୀନ ଗ୍ରୀକ୍ ମାତୃଦେବୀ 'ରିଆ' ( Rhea ) ପୃଥିବୀ ଦେବୀ ବୋଲି ଜ୍ଞାନ କରାହୋଇ ଆସିଛି । ସେହିଭଳି ଫ୍ରିଜିଆର ମାତୃ ଦେବୀ ସିବିଲିଓ (Cybele) ମୂଳତଃ ପୃଥିବୀ ଦେବୀ । ସୁତରାଂ ମେକ୍ସିକୋର ମାତୃଦେବୀ ଚନ୍ଦ୍ରଦେବୀ ନାମରେ ଖ୍ୟାତ । ସେ ମଧ୍ୟ ଥିଲେ ପୃଥିବୀ ଦେବୀ । ଭାରତ ବର୍ଷର ଆଦିମ ଅଧିବାସୀମାନେ ଯେଉଁ ଦେବତାମାନଙ୍କର ପୂଜା କରନ୍ତି ତନ୍ମଧ୍ୟରୁ ଅଧିକାଂଶ ଶସ୍ୟ ଓ ପ୍ରଜନନ-ଶକ୍ତିର ପ୍ରତୀକ ବସୁଧା ମାତାଙ୍କୁ ହିଁ ପୂଜାକରିଥାନ୍ତି । କାଳ କ୍ରମେ ବସୁମାତାର ଉପାସନାରୁ ବିଭିନ୍ନ ଦେବୀଙ୍କର ଉପାସନା ଆରମ୍ଭ ହୋଇଛି । ଏହା ଆଲୋଚନା କଲେ ବେଶ୍ ଜଣାପଡ଼େ । ସପ୍ତଶତୀ ଚଣ୍ଡୀରେ ମହିଷାସୁରକୁ ଯେଉଁ ଦେବୀ ବଧ କରିଛନ୍ତି ତାଙ୍କୁ ଦୁର୍ଗା କହିଲେ ମଧ୍ୟ ସେ ମହାଲକ୍ଷ୍ମୀ ଭାବେ ପରିଚିତ । ମହାଲକ୍ଷ୍ମୀ ଶସ୍ୟର ଅଧିଷ୍ଠାତ୍ରୀ ଦେବୀ ଏହା କହିବା ଅନାବଶ୍ୟକ ।

ଓଡ଼ିଶା ଶକ୍ତି ପ୍ରଧାନ ଅଞ୍ଚଳ । ଏଠାରେ ଯେଉଁଭଳି ଶକ୍ତିପୀଠ ଓ ଶକ୍ତି ଉପାସନା ପରିଦୃଷ୍ଟ ହୁଏ ତାହା ଭାରତର ଯେ କୌଣସି ଅଞ୍ଚଳଠାରୁ ଉନ୍ନତ । ଏବେ ମଧ୍ୟ ପୁରୁଷୋତ୍ତମ ପୀଠର ଶ୍ରୀ ଜଗନ୍ନାଥଙ୍କୁ ମହାକାଳିକା ! ବୋଲି ଜ୍ଞାନ କରାଯାଏ । ସେଥିପାଇଁ ଜଗନ୍ନାଥଙ୍କ ନାସିକାରେ ନୋଲକ ଶୋଭିତ । ଓଡ଼ିଆ ଭାଷାରେ ଲିପିବଦ୍ଧ ଚଣ୍ଡୀ ପୁରାଣ, ଲକ୍ଷ୍ମୀ ପୁରାଣ, ଅସଂଖ୍ୟ ମାଳଶ୍ରୀ, ଚଉପାଇ, ଝୁଲଣାସୁନ୍ଦରୀ, ତୁଳାଭିଣା, କଳିଙ୍ଗା ଦମାସୁଣ, ଦେବେଶ୍ର ଜଣାଣ ଆଦି ବହୁ ଶାକ୍ତଧର୍ମ ଗ୍ରନ୍ଥ ହୋଇଥିଲେ ମଧ୍ୟ ବହିର୍ଭାରତୀୟ ଗବେଷକଙ୍କ ଦୃଷ୍ଟିଠାରୁ ତାହା କିପରି ଦୂରେଇ ରହିଛି ତାହା କହି ହେବନାହିଁ । ଓଡ଼ିଶାରେ ପୃଥ୍ୱୀ ଦେବୀର ପୂଜା ତଥା ଦୁର୍ଗାପୂଜା ଅନ୍ୟାନ୍ୟ ଅଞ୍ଚଳଠାରୁ ଅତି ଉନ୍ନତ ଏଥିରେ ସନ୍ଦେହର ଅବକାଶ ନାହିଁ ।

—:୦:—

ଘର ନଂ ୭୨
ଟାଇପ୍—୪
ଗୋପବନ୍ଧୁ ନଗର
ଭୁବନେଶ୍ୱର

ଶ୍ରୀ କୃଷ୍ଣମୋହନ ଦାସ

# ବୃକ୍ଷଲତା - ପ୍ରକୃତିର ଅମୂଲ୍ୟ ଅବଦାନ



ଆପଣ ଯଦି କେବେ ଗ୍ରୀଷ୍ମକାଳରେ ନ୍ୟୁୟର୍କ କିମ୍ବା ୱାସିଂଟନରେ ରହିବାର ସୌଭାଗ୍ୟ ଲାଭ କରିଥାନ୍ତି — ତେବେ ଆପଣଙ୍କୁ ସେ ଦେଶରେ ପ୍ରତ୍ୟେକ ଦିନ ପ୍ରକାଶ ପାଉଥିବା ବାୟୁର ଗୁଣାତ୍ମକମାନ ସଂପର୍କରେ ନିଶ୍ଚୟ ଜାଣି ରଖିବାକୁ ହେବ । ଯଦି କୌଣସିଦିନ ବାହାରେ ବାୟୁର ଗୁଣାତ୍ମକମାନ କ୍ରମଶଃ ହ୍ରାସପାଇ ବିପଦ ସଙ୍କେତ ସୀମାକୁ ଛୁଇଁଯାଏ — ତେବେ ସେଦିନ ଆପଣଙ୍କୁ ଘରେ ଅଟକି ରହିବାକୁ ପଡ଼ିବ । ଯେ ସବୁ ନଗରମାନଙ୍କରେ ଗଗନଚୁମ୍ବି ଅଟ୍ଟାଳିକାଗୁଡ଼ିକ ମଥାଟେକି ଠିଆ ହୋଇଛନ୍ତି — ମାତ୍ର ସତେଜ ବାୟୁ ସଂଚାଳନ ଲାଗି ଗଛଟିଏ ବା ଲତାଟିଏ ଦେଖିବାକୁ ମିଳେ ନାହିଁ । ଅସଲ କଥା ହେଉଛି ସେ ସବୁ ସ୍ଥାନରେ ଅତ୍ୟଧିକ ଯାନବାହନ ଚଳାଚଳ ହେତୁ ଓ ପାରିବେଶିକ (ecological) ଅସଂଗତି ହେତୁ ବାୟୁମଣ୍ଡଳ ଅଧିକାଂଶ ସମୟରେ ଦୂଷିତ ହୋଇଯାଏ ।

ଆମ ଦେଶରେ କଲିକତା କିମ୍ବା ବମ୍ବେ ପ୍ରଭୃତି ନଗରର ଅଧିବାସୀମାନେ ବାୟୁଜନିତ ଏପରି ଅସୁବିଧାର ସମ୍ମୁଖୀନ ହୁଅନ୍ତି ନାହିଁ । କାରଣ ଏହି ନଗରଗୁଡ଼ିକରେ ରାସ୍ତାର ଉଭୟ ପାର୍ଶ୍ୱରେ ବୃକ୍ଷରୋପଣ କରାଯିବା ସଂଗେ ସଂଗେ ବୃକ୍ଷଲତାବହୁଳ ସାଧାରଣ ପାର୍କମାନ ଏବେ ମଧ୍ୟ ରହିଛି । ଏତଦ୍‌ବ୍ୟତୀତ ସେଠାକାର ଅଧିବାସୀମାନେ ନିଜ ନିଜର ଫୁଲ ଫଳ ବଗିଚା ମଧ୍ୟ ଆପଣା ଘର ପାଖେ କରିଥାନ୍ତି । କିନ୍ତୁ ସହରମାନଙ୍କରେ ଜନସଂଖ୍ୟା କ୍ରମଶଃ ବୃଦ୍ଧି ପାଇବା ଫଳରେ ଏବେ ପାର୍କ କିମ୍ବା ଫୁଲ ବଗିଚା କରିବା ନିମନ୍ତେ ଜାଗାର ଅଭାବ ପଡୁଛି । ଆମ ସହରମାନଙ୍କରେ କୋଠାବାଡି ନିର୍ମାଣ କାର୍ଯ୍ୟ ବଡ଼ ଦ୍ରୁତ ଗତିରେ ଆଗେଇ ଚାଲିଛି । ଏପରିକି ବଡ ବଡ଼ ଉଦ୍ୟାନ ବେଷ୍ଟିତ ବାସଗୃହ ବଦଳରେ ଉପରକୁ ଉପରକୁ ମହଲା ମହଲା ସୌଧମାନ ଗଢା ଚାଲିଛି । ପୁଣି ନୂତନ ଶିଳ୍ପାଞ୍ଚଳ

ଗଢ଼ି ଉଠୁଥିବା ସ୍ଥାନମାନଙ୍କରେ ସମାନ୍ତର ଭାବେ ନୂଆ ନୂଆ ସହରମାନ ପାଖେ ପାଖେ ଗଢ଼ି ଉଠୁଛି । ସେଥିଲାଗି ସ୍ଥାନମାନଙ୍କ ସରକାର ବିଜୁଳି ଶକ୍ତି ଓ ପାନୀୟ ଜଳ ଯୋଗାଇ ଦେଉଛନ୍ତି ଓ ଜନସ୍ୱାସ୍ଥ୍ୟ ସମ୍ପର୍କୀୟ ସମସ୍ୟାଗୁଡ଼ିକୁ ମଧ୍ୟ ସହୃଦୟତାର ସହ ସମାଧାନ କରୁଛନ୍ତି । ଏ ସବୁ ସହରମାନଙ୍କରେ ସ୍ୱଳ୍ପ ବ୍ୟୟରେ ସୁନ୍ଦର ସୁନ୍ଦର ବାସଗୃହ ନିର୍ମାଣ କରିବା ନିମନ୍ତେ ସରକାର ଖୁବ୍ ତତ୍ପର ଅଛନ୍ତି । ମାତ୍ର ବାସଗୃହ ପାର୍ଶ୍ୱରେ ଚଳପ୍ରଚଳ ହେବା ନିମନ୍ତେ ଆବଶ୍ୟକୀୟ ଖାଲିସ୍ଥାନ ଛାଡ଼ି ରଖିବାପାଇଁ ବିଶେଷ ଦୃଷ୍ଟି ଦିଆଯାଉଥିବାପରି ମନେ ହୁଏ ନାହିଁ । ଏପରିକି ରାସ୍ତାର ଉଭୟ ପାର୍ଶ୍ୱରେ ବୃକ୍ଷ ରୋପଣ ସାଧାରଣ ପାର୍କ ଓ ଫୁଲ ଫଳ ବଗିଚା ପ୍ରସ୍ତୁତ କରିବା ନିମନ୍ତେ ବିଶେଷ ଭାବେ ସଚେତନ ଦୃଷ୍ଟି ଦିଆଯାଉ ନାହିଁ । ତେଣୁ ଫଳ ଫୁଲ ବଗିଚାମାନ କାଁ ଭାଁ ଏଠି ସେଠି ଦେଖିବାକୁ ମିଳୁଛି ।



ସ୍ୱାଧୀନତା ପାଇବା ପରେ ଆମ ଦେଶରେ ଚଣ୍ଡୀଗଡ଼ ଓ ଭୁବନେଶ୍ୱର—ଏ ଦୁଇଟି ନୂତନ ସହରର ନିର୍ମାଣ ଯୋଜନା ହାତକୁ ନିଆ ଯାଇଥିଲା । ଚଣ୍ଡୀଗଡ଼ ସହରର ନିର୍ମାଣ କ୍ଷେତ୍ରରେ ବହୁ ଇଞ୍ଜିନିୟର, କାରିଗର ତଥା କଳାକାରମାନଙ୍କର ବିଶେଷ ଅବଦାନ ରହିଅଛି । କିନ୍ତୁ ଲି କରବ୍ୟୁସରଙ୍କ ଭଳି ବିଖ୍ୟାତ ସ୍ଥାପତ୍ୟ ଇଞ୍ଜିନିଅରଙ୍କ ଉଦ୍ୟମ ତଥା ସୁଚିନ୍ତିତ ଯୋଜନା ଫଳରେ ଚଣ୍ଡୀଗଡ଼ ସମଗ୍ର ପୃଥିବୀରେ କଳା ଓ ସ୍ଥାପତ୍ୟ ବିଦ୍ୟା ତଥା ନଗର ନିର୍ମାଣ ବିଦ୍ୟାର ଛାତ୍ରମାନଙ୍କ ନିମନ୍ତେ ଏକ ଦର୍ଶନୀୟ ସ୍ଥାନରୂପେ ପରିଗଣିତ ହୋଇଛି । ଚଣ୍ଡିଗଡ଼ ସହର ଏକ ସୁସଂଗଠିତ ସହରରୂପେ ବିଶେଷ ଖ୍ୟାତି ଲାଭ କରିଅଛି । ଉକ୍ତ ସହରର ଅଭ୍ୟନ୍ତରୀଣ ତଥା ବାହ୍ୟ ଅଞ୍ଚଳ, କୋଠାବାଡ଼ି ଗଢ଼ି ଉଠୁଥିବା ଅଞ୍ଚଳ ଏବଂ ସମତଳ ଅଞ୍ଚଳ ଏ ସବୁକୁ ଗୋଟିଏ ଇଉନିଟ୍ ଭାବେ ଯୋଜନା କରାଯାଇ ଏକ ସଙ୍ଗରେ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ୧୯୪୮ରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଓଡ଼ିଶାର ନୂତନ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ସେହି ପରିପ୍ରେକ୍ଷୀରେ ଭାରତର ତତ୍କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀ ଡକ୍ଟର କାଟ୍ଜୁ ମତ ପ୍ରକାଶ କରିଥିଲେ ।

ଏହା ନିଶ୍ଚିତ୍ ଭାବେ ଭବିଷ୍ୟତରେ ଏକ ମହାନ୍ ତଥା ସୌନ୍ଦର୍ଯ୍ୟମୟୀ ନଗରୀରେ ପରିଣତ ହେବ । ଏକ ପର୍ବତ ଶିରା ମାଳଭୂମି ଉପରେ ଏହି ନୂତନ ଭୁବନେଶ୍ୱର ସହରକୁ ନିର୍ମାଣ କରାଯାଉଛି ଏବଂ ଏହାର ଚତୁଃପାର୍ଶ୍ୱରେ ମାଇଲ ମାଇଲ ବ୍ୟାପି ବନ୍ଧୁର ଝଙ୍ଗାଡ଼ ଓ ରାସ୍ତା ଘେରି ରହିଛି । ଏହାଛଡ଼ା ଉକ୍ତ ସହରଟି ଘଞ୍ଚ ଅରଣ୍ୟ ତଥା ବୃକ୍ଷଲତାରେ ଆବୃତ । ଏପରି ଏକ ସମ୍ଭାବନା ଯେତେବେଳେ ସଫଳ ହେବ —ତାହା ଯେ କେବଳ ନୟନପ୍ରୀତିକର ହେବ ତା' ନୁହେଁ —ଏହା ମଧ୍ୟ ମନୁଷ୍ୟର ମନ ଓ କଳ୍ପନାକୁ ପ୍ରସାରିତ କରିବାରେ ସାହାଯ୍ୟ କରିବ ।

କିନ୍ତୁ ହାୟ ! ଚଣ୍ଡୀଗଡ଼କୁ ଭାରତର ପାରିସ୍ ସହର କୁହାଯାଉଥିବା ସ୍ଥଳେ ଭୁବନେଶ୍ୱର ଅଦ୍ୟାବଧି ଏକ ନଗରୀ ଭାବେ ମଧ୍ୟ ସୁପରିଗଣିତ ହୋଇ ପାରିନାହିଁ । ଭୁବନେଶ୍ୱରର ଅଧିବାସୀମାନେ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଧନୀକ ସଂପ୍ରଦାୟଙ୍କ ଖିଆଲ ବିଳାସର ବସ୍ତୁ ବୋଲି ଭାବିଥାନ୍ତି । ଗତ ଅଠେଇଶି ବର୍ଷ ମଧ୍ୟରେ ରାସ୍ତାର ଉଭୟ ପାର୍ଶ୍ୱରେ ବୃକ୍ଷଲତା ପ୍ରିୟ ପ୍ରଶାସକମାନଙ୍କ ଦ୍ୱାରା ରୋପିତ ବୃକ୍ଷଗୁଡ଼ିକର ସୁରକ୍ଷା କରିବା ନିମନ୍ତେ କୌଣସି ବିଧିବଦ୍ଧ ଉଦ୍ୟମ ଗ୍ରହଣ କରାଯାଇ ନାହିଁ । ଜାଳେଣି ଉଦ୍ଦେଶ୍ୟରେ ରାସ୍ତା ପାର୍ଶ୍ୱସ୍ଥ ଗଛ ଗୁଡ଼ିକୁ ପ୍ରତିଦିନ ଡାଲ କଟାହେବାରେ ଲାଗିଛି । ସହରର ଯେଉଁସବୁ ଅଞ୍ଚଳଗୁଡ଼ିକ ସାଧାରଣ ପାର୍କ ଓ ଫୁଲ୍‌ଫଳ ବଗିଚା ଉଦ୍ଦେଶ୍ୟରେ ସଂରକ୍ଷିତକରି ରଖାଯାଇଛି —ସେ ସବୁ ଅଞ୍ଚଳରେ କ୍ଲବ କିମ୍ବା ଧର୍ମାନୁଷ୍ଠାନମାନ ଅସ୍ୱାଭାବିକ ଭାବେ ଗଢ଼ି ଉଠୁଛି । ଚିତ୍ତବିନୋଦନ ପାଇଁ ସହରର ଅଧିବାସୀମାନେ ପନ୍ଦର ଷୋହଳ କିଲୋମିଟର ଦୂରରେ ଅବସ୍ଥିତ ନନ୍ଦନ କାନନକୁ ଯିବା ନିମନ୍ତେ ବାଧ୍ୟ ହୁଅନ୍ତି ।

ଭାରତଭଳି ଏକ ଜନବହୁଳ ଦେଶର ସର୍ବାଙ୍ଗୀନ ବିକାଶ ନିମନ୍ତେ କଳକାରଖାନା, ଦାସଗୃହ ଓ ସରକାରୀ ତଥା ବେସରକାରୀ କାର୍ଯ୍ୟାଳୟମାନ ଗଠନ କରିବା ଉପରେ ବିଶେଷ ଗୁରୁତ୍ୱ ଦେଉଥିବା ଅବଶ୍ୟ ଅସଂଗତ ନୁହେଁ । କିନ୍ତୁ ସେଥି ନିମନ୍ତେ ଏକ ସୁଚିନ୍ତିତ ସିଦ୍ଧାନ୍ତ ଗ୍ରହଣ କରିବା ଉଚିତ । ଯେତେବେଳେ ନୂଆ ନୂଆ ସହରମାନ ଗଢ଼ିବା ନିମନ୍ତେ ଯୋଜନାମାନ କରାଯାଉଛି— ସେତିକବେଳେ ଘରୋଇ ଫୁଲ୍ ଫଳ ବଗିଚା ତଥା ସାଧାରଣ ପାର୍କ ନିମନ୍ତେ ସ୍ଥାନ ସଂରକ୍ଷଣ କରାଯିବ. ଉଭୟରେ ବହୁତ ଧ୍ୟାନ ଦିଆଯିବା ଏକାନ୍ତ ଆବଶ୍ୟକ । ଜନବସତି ସ୍ଥଳରୁ ବହୁତ ଦୂରରେ ଶିଳ୍ପ କାରଖାନାଗୁଡ଼ିକ ପ୍ରତିଷ୍ଠା କରିବା ଆବଶ୍ୟକ । ଏତଦ୍‌ବ୍ୟତୀତ କଳକାରଖାନା ପ୍ରତିଷ୍ଠା ସଙ୍ଗେ ସଙ୍ଗେ, ଜନବସତି ଓ କାରଖାନା ମଝିରେ ସମାନ୍ତରଭାବେ ଛୋଟ ଛୋଟ ଜଙ୍ଗଲମାନ ସୃଷ୍ଟି କରିବା ମଧ୍ୟ ଆବଶ୍ୟକ । ଯେଉଁ ଅଞ୍ଚଳଗୁଡ଼ିକରେ ଜନବସତିମାନ ସ୍ଥାପନ କରାଯାଉଛି ସେଠାରେ ଲୋକମାନେ ବସବାସ କରି କାର୍ଯ୍ୟ ଆରମ୍ଭ କରିବା ସମୟକୁ ଚିତ୍ତବିନୋଦନ ସ୍ଥାନମାନ ପ୍ରସ୍ତୁତ ହୋଇଥିବା ବାଞ୍ଛନୀୟ । ତା'ଅର୍ଥ—କୋଠାବାଡ଼ି ଗଢ଼ା ହେବା ସଙ୍ଗେ ସଙ୍ଗେ ପାଖାପାଖି ବଗିଚା ବା ପାର୍କମାନ ମଧ୍ୟ ତିଆରି ହୋଇ ସରିବା ଉଚିତ ।

ଗ୍ରାମାଞ୍ଚଳର ସୁସ୍ଥ ଓ ସଜୀବ ବାତାବରଣ ମଧ୍ୟରେ ବଢ଼ି ଉଠିଥିବା ଲୋକମାନେ ଏହିସବୁ ବୃକ୍ଷଲତାହୀନ ନୂତନ ସହରାଞ୍ଚଳଗୁଡ଼ିକରେ ବସତି ସ୍ଥାପନ ହେଲାପରେ କାର୍ଯ୍ୟକରିବା ପାଇଁ ଉତ୍ସାହିତ ହୋଇ ପାରନ୍ତି ନାହିଁ । ଯଦି ଏଥିପ୍ରତି ଦୃଷ୍ଟି ଦିଆନଯାଏ, ତେବେ ସେମାନଙ୍କ ମଧ୍ୟରେ ମନସ୍ତାତ୍ତ୍ୱିକ ଉଦାସୀନତା ବୃଦ୍ଧି ପାଇବ । ମାନବିକ ସଂପର୍କ ଉପରେ ଗବେଷଣାରତ ଆଧୁନିକ ମନସ୍ତାତ୍ତ୍ୱିକ ଓ ନାନାବିଧ ସମାଜତତ୍ତ୍ୱବିଦ୍‌ମାନେ କହନ୍ତି— ଅଶାନ୍ତି, ଉଗ୍ର ସାମାଜିକ ଉତ୍ତେଜନା, ଦଙ୍ଗାହାଙ୍ଗାମା ଓ ଅଧପାଗଳାମୀର ମୁଖ୍ୟ କାରଣ ହେଲା ପାରିବେଶିକ (ecological) ଭାରସାମ୍ୟ ହରାଇଥିବା ଜନବହୁଳ ନଗରୀମାନଙ୍କର କଳୁଷିତ ବାତାବରଣ ।

ପାରିବେଶିକ ବିଜ୍ଞାନ (ecology) ଦୃଢ଼ ସ୍ୱରରେ ସିଦ୍ଧାନ୍ତ ଦେଇଛି ପ୍ରାଣୀଜଗତ ଓ ଉଦ୍ଭିଦ ଜଗତ ଜୀବଜଗତର ସ୍ଥିତିପାଇଁ ଉଭୟ ଉଭୟଙ୍କ ଉପରେ ନିର୍ଭର କରିଥାନ୍ତି । ପାରିବେଶିକ ଭାରସାମ୍ୟ ରକ୍ଷା କ୍ଷେତ୍ରରେ ଉଦ୍ଭିଦ ଜଗତର ଭୂମିକା ପୁଣି ଅତି ଗୁରୁତ୍ୱପୂର୍ଣ୍ଣ । ବୃକ୍ଷଲତାଦ୍ୱାରା କେବଳ ମୃତ୍ତିକାକ୍ଷୟ ବନ୍ଦ ହୁଏ ଏବଂ ବେପରୁଆଭାବେ ଜଙ୍ଗଲ ନଷ୍ଟ କରିବା ଫଳରେ ଏପରି ବନ୍ୟା ବିପତ୍ତି ଓ ବାତ୍ୟା

ପ୍ରକୋପ ବୃଦ୍ଧି ପାଏ, ସେ ସଂକ୍ରାନ୍ତରେ ଭୂଗୋଳ ପ୍ରଣେତାମାନେ ନିଶ୍ଚୟ ଅବହିତ ଥିବେ । ବୃକ୍ଷ ଲତା ଗୁଳ୍ମାଦି ଉଦ୍ଭିଦମାନେ ଜଳୀୟ ବାଷ୍ପ ଗ୍ରହଣ କରି ନିଜ ଭିତରେ ସଂରକ୍ଷିତ କରିବା ଫଳରେ ବାୟୁମଣ୍ଡଳକୁ ଶୀତଳ ତଥା ଆର୍ଦ୍ର କରି ରଖିଥାନ୍ତି । ଏମାନଙ୍କ ପୁଣି ଏତଦ୍ୱାରା ଉପରିସ୍ଥ ମେଘଗୁଡ଼ିକୁ ତଳକୁ ଆକର୍ଷଣ କରି ବର୍ଷା କରାଇବାରେ ସାହାଯ୍ୟ କରନ୍ତି ଏବଂ ମରୁଡ଼ି ଆଶଙ୍କାରୁ ମୃତ୍ତିକାକୁ ରକ୍ଷା କରନ୍ତି । ଫସଲ ସୁରକ୍ଷିତ ହୁଏ । ଏହି ବୃକ୍ଷଲତାଗୁଡ଼ିକ ବନ୍ୟଜନ୍ତୁମାନଙ୍କୁ ଆଶ୍ରୟ ଦେଇଥାନ୍ତି ଏବଂ ଅନ୍ୟ ପକ୍ଷରେ ଏହି ବନଜନ୍ତୁଗୁଡ଼ିକ ଉଭୟ ମନୁଷ୍ୟ ଓ ଉଦ୍ଭିଦ ଜଗତକୁ ବଞ୍ଚିବାରେ ସାହାଯ୍ୟ କରନ୍ତି । ବୃକ୍ଷଲତାମାନେ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଓ ଭୂପୃଷ୍ଠରୁ ଜଳ ଆହରଣ କରିଥାନ୍ତି ଏବଂ ସେଗୁଡ଼ିକୁ ନିଜ ଭିତରେ ଆପଣାର ଖାଦ୍ୟରୂପେ ପ୍ରସ୍ତୁତ କରିବା ପ୍ରଣାଳୀରେ ବିଶୁଦ୍ଧ ଅମ୍ଳଜାନ ବାଷ୍ପ ଗୁଆଁକୁ ଗୁଆଁ ପ୍ରସ୍ତୁତ ହୋଇଯାଏ ଏବଂ ସେହି ବିଶୁଦ୍ଧ ପ୍ରାଣଦାୟକ ଅମ୍ଳଜାନ ବାଷ୍ପ ଗଛଲତା ଭିତରୁ ବାୟୁମଣ୍ଡଳକୁ ବିଚ୍ଛୁରିତ ହୋଇଥାଏ । ସେଥିଲାଗି ଘନ ବୃକ୍ଷଲତାଚ୍ଛାଦିତ ଅଞ୍ଚଳର ବାୟୁମଣ୍ଡଳରେ ଅମ୍ଳଜାନ ବାଷ୍ପ ଖୁବ୍ ଅଧିକ ଥାଏ । ଏହି ପ୍ରାଣଦାୟକ ବିଶୁଦ୍ଧ ଅମ୍ଳଜାନ ବାଷ୍ପ ଦ୍ୱାରା



ବୃକ୍ଷଲତାମାନେ ବାୟୁମଣ୍ଡଳକୁ ଶୁଦ୍ଧ ରଖନ୍ତି ଓ ବାୟୁ ଦୂଷିତକରଣ ପ୍ରକ୍ରିୟାକୁ ପ୍ରତିରୋଧ କରନ୍ତି । ବୃକ୍ଷଲତା ଅଭାବରେ ବାୟୁମଣ୍ଡଳରେ ଅମ୍ଳଜାନ ପରିମାଣ କମିଯାଏ ଓ ପ୍ରାଣୀ ତଥା ମନୁଷ୍ୟମାନେ ଶ୍ୱାସରୁଦ୍ଧ ହେବାଭଳି ଅବସ୍ଥା ସୃଷ୍ଟି କରନ୍ତି । ବଡ଼ ବଡ଼ ସହରରେ ଶ୍ୱାସକଷ୍ଟ, ହୃଦ୍‌ରୋଗ, ଯକ୍ଷ୍ମା ପକ୍ଷାଘାତ ଆଦି ରୋଗ ଏହି କାରଣରୁ ଲୋକେ ଭୋଗ କରନ୍ତି । ଅହେତୁକ କ୍ଳାନ୍ତି ଓ ଅବସନ୍ନତା ମଧ୍ୟ ଏହି କାରଣରୁ ଲୋକେ ଭୋଗ କରନ୍ତି ।

ବୃକ୍ଷଗୁଡ଼ିକର ଅନ୍ୟସବୁ ଉପଯୋଗିତା ହେଲା କାଠ ଶିଳ୍ପଲାଗି କଞ୍ଚାମାଲ, ପୁଣି ନାନାଦି ଖାଦ୍ୟ ଉପଯୋଗୀ ଫଳ, ଫୁଲ, ଚୋଳ, ମହୁ, ଜାଳେଣୀ ଓ ଗୋଖାଦ୍ୟ ଆମେ ଏହି ବୃକ୍ଷଲତାଙ୍କଠାରୁହିଁ ପାଇଥାଉ । ବଡ଼ ବଡ଼ ସହରରେ ଯାନବାହାନାଦିଜନିତ, କାରଖାନାମାନଙ୍କର ଉଦ୍‌ଭୂତ ଓ ବହୁ ଜନସମାଗମ ଜନିତ ନାନାଦି ଶବ୍ଦମୁଖର କୋଳାହଳ ଜାତ ହୋଇଥାଏ । ଅଜ୍ଞ ଅଜାଣତରେ ଏହି ସବୁ ଉତ୍ସମୂଳ ଦେଇ ଆମର ଶ୍ରବଣଶକ୍ତି ଓ ସ୍ନାୟୁମଣ୍ଡଳୀ ଉପରେ ଆଘାତ ସୃଷ୍ଟି କରେ

ବୃକ୍ଷଲତାମାନେ ଅଦ୍ଭୁତଭାବେ ଏହି ସବୁ ଶବ୍ଦଗୁଡ଼ିକୁ ନିଜ ଭିତରକୁ ଟାଣିନେଇ ବହୁ ପରିମାଣରେ ଶବ୍ଦସାମ୍ୟ ରକ୍ଷା କରି ପାରନ୍ତି । ଆଉ ମଧ୍ୟ ଧୂଳି ଓ ଧୂଆଁଗୁଡ଼ିକୁ ନିଜ ଆଡ଼କୁ ଟାଣି ନେବାର ଅଦ୍ଭୁତ କ୍ଷମତା ଗଛଲତାଙ୍କର ରହିଛି ।

ବୃକ୍ଷଲତାର ସବୁଜିମା ଆମର ଦୃଷ୍ଟିଶକ୍ତି ବଢାଏ — ଆମର ମନକୁ ଆମ ଅଜାଣତରେ ଶାନ୍ତ ଓ ସ୍ନିଗ୍ଧ ରଖେ । ବୃକ୍ଷଲତାମାନଙ୍କର ସୌନ୍ଦର୍ଯ୍ୟ ଆବାଳବୃଦ୍ଧବନିତା, ଆମୂର୍ଖପଣ୍ଡିତ ସମସ୍ତଙ୍କ ଦୃଷ୍ଟିକୁ ଆକର୍ଷିତ କରିଥାଏ । ପ୍ରକୃତି ପ୍ରତି ଏହି ନିବିଡ଼ ମଧୁର ଆକର୍ଷଣ ଆମର ଏକ ଆଦିମ ପ୍ରବୃତ୍ତି । ଏହି ଆକର୍ଷଣ କୌଣସି କାରଣରୁ ଲୋପ ହେଲେ ମଣିଷ ପ୍ରକୃତି-ଛଡ଼ା ହୋଇଯାଏ । ତାର ବୁଦ୍ଧି ବୃତ୍ତି ଉପରେ ଆଞ୍ଚ ଆସେ । ତାର ହୃଦୟ-ବୃତ୍ତିର ସୁକୁମାରତା ନଷ୍ଟ ହୋଇଯାଏ ।

ଗୃହ ଯୋଜନା ବ୍ୟାପାରରେ ଯଦି ଆପଣ ଘର ପାଖରେ ସବୁଜ ଲନ୍, କଣ୍ଟାବାଡ଼, ଲତାଛାଦିତ କୁଞ୍ଜ ଏବଂ ଗଛମାନ ରଖିବେ ତେବେ ଗ୍ରୀଷ୍ମକାଳୀନ ଉତ୍ତପ୍ତବାୟୁ ଓ ଶୀତକାଳୀନ ଥଣ୍ଡାବାୟୁର ପ୍ରକୋପରୁ ଆପଣ ନିଶ୍ଚୟ ରକ୍ଷା ପାଇବେ ! ପ୍ରଚଣ୍ଡ ସୂର୍ଯ୍ୟ କିରଣ ଏବଂ ଜଳବାୟୁଜନିତ ଅନ୍ୟାନ୍ୟ ଅସହ୍ୟ ପ୍ରକୋପରୁ ମଧ୍ୟ ରକ୍ଷା ପାଇବେ । କେବଳ ଦୃଶ୍ୟ ଉପଭୋଗ ନିମନ୍ତେ ଘର ପାଖରେ ଯଥାତଥା ଉଦ୍ୟାନଟିଏ କରି ଦେଲେ ଚଳିବ ନାହିଁ ବରଂ ସୁସଂଗଠିତ ଏକ ଉଦ୍ୟାନମୟ ପରିବେଶ ଭିତରେ ନିଜର ବାସଗୃହ ନିର୍ମାଣ କରିବାର ଯଥାର୍ଥତା ସମସ୍ତେ ଅନୁଭବ କରିବା ଉଚିତ ।

ବୃକ୍ଷଲତାମାନେ ଯେପରି ସ୍ଥିର ଓ ଅଟଳ ଭାବେ ଦଣ୍ଡାୟମାନ ହୋଇ ରହିଥାନ୍ତି ସେମାନଙ୍କର ସେହି ଅନ୍ତର୍ନିହିତ ସ୍ଥିରତା, ଦୃଢ଼ତା, ଅଟଳତା ଓ ଧ୍ୟାନମୌନତା ଆମମାନଙ୍କ ମନଭିତରେ ଆମ ଅଜାଣତରେ ଅପୂର୍ବ ପ୍ରତ୍ୟୟଶୀଳ ଆନନ୍ଦଭାବ ସୃଷ୍ଟି କରିଥାଏ । ଗୋଟିଏ ବିଶାଳ ମହୀରୁହ ଆମ ମନ ଭିତରେ ସୃଷ୍ଟି କରେ ଏକ ପ୍ରଶାନ୍ତ ସ୍ଥିରତାର ଅନୁଭୂତି । ଏହାର ଦର୍ଶନ ମାତ୍ରେ ଆମର ମନଭିତର ନାନାବିଧ ଚଞ୍ଚଳତା ଓ ଉତ୍ତେଜନା ନଷ୍ଟ ହୋଇଯାଏ । ଏହାର ସୁଶୀତଳ ଛାୟା ଆମର ସ୍ନାୟୁଗୁଡ଼ିକୁ ସ୍ନିଗ୍ଧ ଓ ପୁଲକିତ କରିଥାଏ । କିନ୍ତୁ ଏଥିରୁ ମନେ କରିବା ଉଚିତ ନୁହେଁ ଯେ ବୃକ୍ଷଲତାମାନେ ଆମ ଭିତରୁ ସକ୍ରିୟ ପ୍ରବୃତ୍ତି ଗୁଡ଼ିକୁ ନଷ୍ଟ କରିଦିଅନ୍ତି । ସେପରି ତୁଳନା ଭଲ ନୁହେଁ । କଥାଟା ଏପରି ନୁହେଁ ଯେ ଆମେ ଯଦି ଗୋଟିଏ ଦ୍ରୁତଗାମୀ ଟ୍ରେନ ଦେଖୁ ତେବେ ଆମ ଭିତରେ ଗତି ଓ ଶକ୍ତି ବୃତ୍ତିମାନ ଜାଗି ଉଠିବ ଓ ଆମେ ଯଦି ଗୋଟିଏ ବିଶାଳ ବଟବୃକ୍ଷ ଦେଖୁ ତେବେ ଆମ ଭିତରେ ଗୋଟାଏ ନିରୁଦ୍ୟମ ଜଡ଼ତା ସ୍ଥାଣୁତାର ଭାବ ଘୋଟିଯିବ । ବରଂ କଥାଟା ଠିକ୍ ଓଲଟା । ଗୋଟିଏ ବିଶାଳ ବଟବୃକ୍ଷ ତଳେ କିଛି ସମୟ ବସନ୍ତୁ । ଆପଣ ଅନୁଭବ କରିବେ ଖୁବ୍ ଶାନ୍ତ ଏବଂ ଅଟଳତା ଏବଂ କ୍ରିୟାକ୍ଷମ ଏକ ଶକ୍ତିମୟ ଦୃଢ଼ତା ଆପଣଙ୍କ ମନଭିତରେ ଧୀରେ ଧୀରେ ସଂଚରିତ ହୋଇ ଯାଉଛି । ଆଉ ମଧ୍ୟ ଗୋଟିଏ ପ୍ରାକୃତିକ ମନୋରମ ସବୁଜଛାୟା ଘେରା ବିଶ୍ୱସୃଷ୍ଟିକୁ ଏପରି ଭାବେ ବୁଝିବାକୁ ହେବ । ଆଉ ମଧ୍ୟ ଗୋଟିଏ ପ୍ରାକୃତିକ ମନୋରମ ସବୁଜଛାୟା ଘେରା ପରିବେଶ ଆମକୁ ଧୀରସ୍ଥିର ଭାବେ କିଛି ଚିନ୍ତା କରିବାକୁ, ତା କଳ୍ପନା କରିବାକୁ ସାହାଯ୍ୟ କରିଥାଏ ।

ଉଦ୍ଭିଦମାନେ କହନ୍ତି ଗଛ ଗଛ ଭିତରେ ବି ନାନାବିଧ ଭାବରେ ଆଦାନପ୍ରଦାନ ଚାଲିଥାଏ, ଅଦ୍ଭୁତ ନୀରବତା ଭିତରେ, ଅତ୍ୟନ୍ତ ସଂଗୋପନରେ । ସୂର୍ଯ୍ୟାଲୋକର ସଂପାତରେ ନାନାବିଧ ରୂପାଲୋକର ମୁହୂର୍ମୁହୁ ଖେଳ ଭିତରେ ସେମାନଙ୍କର ରଙ୍ଗ ବଦଳେ ଏବଂ ସେମାନଙ୍କ ଭିତରେ କେତେସବୁ ସଂବେଦନଶୀଳତାର ଆଦାନ ପ୍ରଦାନ ଘଟିଯାଏ । ସବୁରି ଅଲକ୍ଷ୍ୟରେ । ସେଇ ସବୁ ଅବଚେତନ ଦୃଶ୍ୟ ଦର୍ଶକର କଳ୍ପନାକୁ ଅନୁରଂଜିତ କରିଦିଏ । କବି ନହେଲେ ବି ସାଧାରଣ ଲୋକର ମନ ଭିତରେ ନାନାଦି ସୁନ୍ଦର ସୁନ୍ଦର ଅଥବା ରୋମାଣ୍ଟିକ ଅନୁଭୂତିମାନ ଜାଗିଉଠେ । ଫଳରେ ମନୁଷ୍ୟର ସ୍ୱଭାବ ହୋଇଉଠେ ସହଜ, ସଂଗତପୂର୍ଣ୍ଣ ଓ ପ୍ରାଣବନ୍ତ ।

ସାରା ଦିବସର କର୍ମକ୍ଳାନ୍ତ ଜୀବନର ଅବସାନ ପରେ ଜ୍ୟୋତ୍ସ୍ନା ସିକ୍ତ ରାତିର ବିରାମ କାଳରେ, ଜଣେ ନିଜ ଘରର ଲତା ଗୁମ୍ଫିତ ଛାତ ବା ଚନ୍ଦ୍ରଶାଳା ଉପରେ ବସି କିମ୍ବା କୌଣସି ଅବସର ବିନୋଦନ ସ୍ଥଳରେ କିମ୍ବା କୌଣସି ପର୍ଯ୍ୟଟକ ଶିବିର ସଂଲଗ୍ନ ଉଦ୍ୟାନରେ ବସି ଜଣେ ଏହି ବୃକ୍ଷଲତାଙ୍କ

ସାନ୍ଧ୍ୟ ଧରର ଅଠି ତାର ଦୈହିକ ଓ ମାନସିକ କ୍ଲାନ୍ତି ବା ଅବସାଦ ନିଃସ୍ୱ ମେଣ୍ଟାଇ ପାରିବ । ତେଣୁ ଏହି ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରୁ ସମଗ୍ର ପରିବେଶ ଏବଂ ତାହୋପଯୋଗୀ ସ୍ଥାନକୁ ଗୋଟିଏ ଇଉନିଟ୍ ରୂପେ ବିଚାରକୁ ନେଇ ଆଧୁନିକ ନଗର ନିର୍ମାଣ ବା ସ୍ଥପତିମାନେ ନର୍ମ-ନକ୍ସା ପ୍ରସ୍ତୁତ କରିବା ଉଚିତ ନୁହେଁ କି ?

ପାରିବେଶିକ ସ୍ୱାସ୍ଥ୍ୟ ହ୍ରାସ ହେବା ଯୋଗୁଁ ଯୁକ୍ତରାଷ୍ଟ୍ର ଆମେରିକା ଭଳି ଦେଶମାନଙ୍କରେ ଯେଉଁ ଦୂଷିତତାଯୁକ୍ତ ସମସ୍ୟା ଦେଖା ଦେଇଛି ସେ ସବୁ ଦେଶମାନ ତାର ନିରାକରଣ ଦିଗରେ ବହୁ ଚେଷ୍ଟା ଚଳାଇଛନ୍ତି । ସେମାନେ ସେମାନଙ୍କର ସହରତଳୀ ଅଞ୍ଚଳମାନଙ୍କରେ ପାର୍କ ଜଙ୍ଗଲ ପ୍ରଭୃତି ସୃଷ୍ଟି କରୁଛନ୍ତି । କର୍ମବ୍ୟସ୍ତ ସପ୍ତାହଟି ଶେଷହେଲେ ସେଠାର ଅଧିବାସୀମାନେ ସେ ସବୁ ସ୍ଥାନକୁ ଚିତ୍ତବିନୋଦନ ଲାଗି ଛୁଟିଯାଆନ୍ତି ଓ ସମସ୍ତ ଅବସାଦ ଦୂର କରନ୍ତି । ମାତ୍ର ବିପୁଳ ବିପୁଳ ମୁଦ୍ରା ବ୍ୟୟରେ କରାଯାଉଥିବା ଏ ଧରଣର ପରିକଳ୍ପନା ଆମ ଦେଶରେ କାର୍ଯ୍ୟକାରୀ ହୋଇପାରିବା ସହଜ ନୁହେଁ । କିନ୍ତୁ ତଥାପି ବର୍ତ୍ତମାନଠାରୁ ମଧ୍ୟ ଏ ଦିଗରେ କିଛି ମୌଳିକ କାର୍ଯ୍ୟ ଆରମ୍ଭ କରାଯାଇପାରେ ।



୧୯୫୦ ମସିହାଠାରୁ ଜନସାଧାରଣ ବନମହୋତ୍ସବ ମାଧ୍ୟମରେ ବୃକ୍ଷରୋପଣ କାର୍ଯ୍ୟକ୍ରମକୁ ଏକ ଜାତୀୟ ପର୍ବରୂପେ ପାଳନକରି ଆସୁଛନ୍ତି । ଏହି କାର୍ଯ୍ୟକ୍ରମ ଏକ ଆନ୍ଦୋଳନର ରୂପରେଖ ନେବା ସଙ୍ଗେ ସଙ୍ଗେ ସେହି ବର୍ଷାବଧି ପ୍ରତିବର୍ଷ ହଜାର ହଜାର ଫଳ ଓ ଫୁଲଗଛମାନ ରୋପଣ କରାଯାଉଛି । କିନ୍ତୁ ଏହି ସବୁ ଗଛର ରକ୍ଷଣାବେକ୍ଷଣ ଦାୟିତ୍ୱ ସୁଷ୍ଠୁ ରୂପେ ନିଆ ଯାଇ ପାରୁନଥିବା ହେତୁ, କେତେକ ବୃକ୍ଷକଟାଳୀ ଏହାର ସୁଯୋଗ ନେଇ ଜାଳେଣୀକାଠ ପାଇଁ ବହୁତ ଗଛ କାଟି ଚାଲିଛନ୍ତି । ବୃକ୍ଷ କର୍ତ୍ତନ ଏକ ଧର୍ତ୍ତବ୍ୟ ଅପରାଧ ବୋଲି ଆମର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ବାରମ୍ବାର କହୁଛନ୍ତି । ମାତ୍ର ଏହି ଅପରାଧୀମାନଙ୍କୁ ଧରି ଜେଲ୍‌ରେ ପୁରିବା ଜରିମାନା କରିବା ଭଳି କୌଣସି ବ୍ୟବସ୍ଥା କରାଯାଉଛି ବୋଲି ଆମେ ଜାଣିନାହୁଁ ।

ଆମର ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରକୃତିର ଉପାସିକା । ଏହି ବାୟୁମଣ୍ଡଳ ଦୂଷିତ କାଳରେ ଆମର ପାରିପାର୍ଶ୍ୱିକ ଅବସ୍ଥାର ସୁସ୍ଥ ପରିବର୍ତ୍ତନ ଲାଗି ସେ ଖୁବ୍ ଆଗ୍ରହ ପ୍ରକାଶ କରିଛନ୍ତି । ପ୍ରକୃତିର ଅମୂଲ୍ୟଦାନ—ବିଶେଷତଃ ବୃକ୍ଷଲତା ଗୁଡ଼ିକ ପ୍ରତି ଆମେ ବର୍ତ୍ତମାନ ଯେଉଁ ମନୋଭାବ ଦେଖାଉଛୁ—ତାର ଘୋର ନିନ୍ଦା କରନ୍ତି ପ୍ରଧାନ ମନ୍ତ୍ରୀ ।

ଏହା ଗୋଟିଏ ଜଣାଶୁଣା କଥା ଯେ ଓଡ଼ିଶାର ଆଦିବାସୀମାନେ ପୋଡୁଚାଷ କରିବା କ୍ରମରେ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ବରାବର ସ୍ଥାନ ପରିବର୍ତ୍ତନ କରନ୍ତି । ପୋଡୁଚାଷ କରିବା ଫଳରେ ଜଙ୍ଗଲମାନ ନଷ୍ଟ ହୋଇଥାଏ । ଏବେ ଅବଶ୍ୟ ଏହା ଉପରେ ସରକାର ତୀକ୍ଷ୍ଣ ଦୃଷ୍ଟି ରଖିଲେଣି । ଏବେ ଆଇନ୍ ପ୍ରଣୟନ କରାଯାଇଛି କି—ଯେଉଁ ଠିକାଦାରମାନେ ଜଙ୍ଗଲରୁ ଗଛ କାଟିବା ପାଇଁ ଠିକା ଧରିଥାନ୍ତି—ସେମାନେ ଗଛ କାଟିବା ସଙ୍ଗେ ସଙ୍ଗେ ଯେପରି ହେଲେ ସେହି ସ୍ଥାନରେ ନୂଆ ଗଛ ରୋପଣ କରି ବୃକ୍ଷ ସଂଖ୍ୟାର ସ୍ଥିରତା ରକ୍ଷା କରିବେ । ନୂଆ ଗଛ ଲଗାଇବା ଫଳରେ ମୃତ୍ତିକାକ୍ଷୟକୁ ରୋକାଯାଇ ପାରିବ ! ପ୍ରଧାନ ପ୍ରଧାନ ସହରମାନଙ୍କ ସନ୍ନିକଟରେ ଯେଉଁ ନଗର ଉପନିବେଶମାନ ଗଠନ କରାଯାଇଛି, ସେସବୁ ନଗରମାନଙ୍କରେ ଚିତ୍ତବିନୋଦନ ସ୍ଥଳ ଓ ପାର୍କ ନିର୍ମାଣ କାର୍ଯ୍ୟକ୍ରମକୁ ଅଗ୍ରାଧିକାର ଦିଆଯାଇଛି । ଆମ ରାଜଧାନୀରେ ବୃହତ୍ତର ଭୁବନେଶ୍ୱର ଉନ୍ନୟନ ସଂସ୍ଥା ପ୍ରଥମେ ବନଖଣ୍ଡ ବୃକ୍ଷ ରୋପଣ କରିସାରି ତା'ପରେ ଯାଇ ଗୃହନିର୍ମାଣ କାର୍ଯ୍ୟ ଆରମ୍ଭ କରିବାର ସିଦ୍ଧାନ୍ତ ନେଇଛନ୍ତି ।

ଏଣେ ମହାରାଷ୍ଟ୍ରରେ ଛୋଟ ଛୋଟ ଜଙ୍ଗଲ ଓ ସାଧାରଣ ପାର୍କମାନ ପ୍ରାୟ ସବୁ ସାନବଡ଼ ସହର ଓ ସହରତଳି ଅଞ୍ଚଳମାନଙ୍କରେ ନୂତନଭାବେ ସୃଷ୍ଟି କରାଗଲାଣି । ଯାହାଫଳରେ କି ନଗରବାସୀମାନେ ଦୂଷିତବାୟୁ ପ୍ରକୋପରୁ ମୁକ୍ତ ହୋଇ ସେହି ସେହି ଜଙ୍ଗଲରେ ଯାଇ ମୁକ୍ତ ଓ ସତେଜବାୟୁ ସେବନ କରିପାରିବେ ! ପଶ୍ଚିମବଙ୍ଗ ସରକାର କଡ଼ା ନିର୍ଦ୍ଦେଶନାମା ଦେଇଛନ୍ତି । କୌଣସି ବ୍ୟକ୍ତି ମୁକ୍ତ ବାୟୁ ଓ ସ୍ୱାସ୍ଥ୍ୟ ଯୋଗାଉଥିବା ଗଛଗୁଡ଼ିକୁ କାଟିପାରିବେ ନାହିଁ । ପଶ୍ଚିମବଙ୍ଗ ହରଦାରଙ୍କ ଜଙ୍ଗଲ ବିଭାଗ କଲିକତାର ପ୍ରଧାନ ରାସ୍ତା କଡ଼େ କଡ଼େ କେନାଲ କୂଳେ କୂଳେ ଦଶ କିଲୋମିଟର ଲମ୍ବର ଏକ ମନୋରମ ଉଦ୍ୟାନ ସୃଷ୍ଟି କରିଛନ୍ତି । ନିକଟରେ "ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ" ପତ୍ରିକା ଉଦ୍ୟାନଟିର ପ୍ରଶଂସା କରି ଲେଖିଛନ୍ତି—"ଏହି ଉଦ୍ୟାନଟି ଦର୍ଶକ ଭିତରେ କି ଚମତ୍କାର ରୂପଧାରଣ ନ କରିଛି । ଏଥିରେ ଲଗାଯାଇଥିବା ଝାଉଁଗଛ ଗୁଡ଼ିକ ଇତମଧ୍ୟରେ ପନ୍ଦରଫୁଟ ପର୍ଯ୍ୟନ୍ତ ବଢ଼ିଗଲାଣି । ଗୁଲେନ୍ ଭିଲ୍ଥା ଓ ଆକାଶିଆ ଗଛଗୁଡ଼ିକ ପରସ୍ପର ସଙ୍ଗେ ସ୍ପର୍ଦ୍ଧାକରି ବଢୁଥିବାଭଳି ଲାଗୁଛି । ପୋପଲାର ଗଛଗୁଡ଼ିକ ତ ବିନାବାଧାରେ ଉପରକୁ ବଢ଼ିଯାଉଛନ୍ତି । ପାଣି କୂଳେ କୂଳେ ଲାଲ ଫୁଲଗୁଡ଼ିକ ଫୁଟି ଉଠିଲେଣି । ଘାସ ସବୁ ଏମିତି ଘଞ୍ଚ ଓ ସବୁଜ ହୋଇ ଉଠିଛି ଯେ ମନେ ହୁଏ ସତେ କି ସାରା କଡ଼େ କଡ଼େ କିଏ କାର୍ପେଟ ବିଛେଇ ଦେଇଯାଇଛି ! କେବଳ କେନାଲ ଭିତରୁ ମଇଲ ମାଇଲ ଧରି ଯେଉଁ ବଳଦଳଗୁଡ଼ିକ ଭର୍ତ୍ତି ହୋଇଛି ସେଗୁଡ଼ିକୁ ସଫା କରିଦେଲେ ଏହା ଖୁବ୍ ସୁନ୍ଦର ଦର୍ଶନୀୟ ଜାଗାଟିଏ ହେବ" କୁହାଯାଇଛି—ସମଗ୍ର ଦେଶରେ ଏହା ସବୁଠାରୁ ବୃହତ୍ତମ ଉଦ୍ୟାନ ।

ଏହିପରି ବହୁ ଅଞ୍ଚଳକୁ ଯୋଜନାକରି ଉଦ୍ୟାନ ବା ବନରେ ପରିଣତକରି ବାୟୁମଣ୍ଡଳକୁ ଦୂଷିତ ହୋଇଯିବା ବିପଦରୁ ରକ୍ଷା କରାଯାଉଛି । ବର୍ତ୍ତମାନହିଁ ଉପଯୁକ୍ତ ସମୟ, ଯେତେବେଳେ କି ସରକାର, କର୍ପୋରେସନ୍, ମ୍ୟୁନିସିପାଲିଟି, ନଗର ଯୋଜନା ସଂସ୍ଥା, ଉଦ୍ୟାନ ନିର୍ମାଣ ସଂସ୍ଥା ଓ ସାଧାରଣ ବୃକ୍ଷଲତା ପ୍ରିୟ ନାଗରିକମାନେ ସହର ବା କୋଠାବାଡ଼ିମାନ ଗଢ଼ି ଉଠିବା ପୂର୍ବରୁ ତା ସଙ୍ଗେ ସଙ୍ଗେ ଉଦ୍ୟାନମାନ ସୃଷ୍ଟି କରି ଚାଲିବେ । ଏଠି ମନେ ରଖିବାର ଅଛି—ଆମର ବଂଶଧରମାନେ ଯେପରି ଆମର ଅସାବଧାନତା ବା ଅବିବେଚନା ଫଳରେ ଲୁଣ୍ଠନ ଓ ଅଲକ୍ଷଣା ନହୋଇଯାନ୍ତି । ମନୁଷ୍ୟ ତା'ର ଜୀବନରେ ବୃକ୍ଷଲତାଗୁଡ଼ିକର ଗୁରୁତ୍ୱ କେତେ ଅଧିକ ତାହା ଅନୁଭବ କରୁ । ଗଛଗୁଡ଼ିକୁ ସ୍ନେହର ସହିତ, ସତର୍କତାର ସହିତ ରକ୍ଷଣ ଓ ପାଳନ କରାଯାଉ । ସମସ୍ତେ ମନେ ରଖନ୍ତୁ—ଗଛଲତାଙ୍କ ବଂଶ ସୁରକ୍ଷିତ ହେଲେ ମାନବସମାଜ ସୁରକ୍ଷିତ ହେବ ।

ଆମର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ସୂଚନା ଦେଇଛନ୍ତି—ବିନାନୁମତିରେ ଜଙ୍ଗଲରୁ ଗଛ କାଟୁଥିବା ଲୋକଙ୍କୁ ଅପରାଧୀ ବୋଲି ବିଚାରକରି ସେମାନଙ୍କୁ ଦଣ୍ଡ ଦେବା ଲାଗି ଆମେ ଶୀଘ୍ର ଆଇନ କରିବାକୁ ଯାଉଛୁ ।"

ମୁଖ୍ୟମନ୍ତ୍ରୀଙ୍କର ଏହି ଯୁଗୋପଯୋଗୀ ସଂବେଦନଶୀଳ ଉକ୍ତି ସାର୍ଥକ ହେଉ—ଏବଂ ଅନ୍ୟମାନେ ଏହାକୁ ଅନୁସରଣ କରନ୍ତୁ—ଏହିକି କାମନା ।

ଲୋକ ସମ୍ପର୍କ ବିଭାଗ ଭୁବନେଶ୍ୱର

# ସାମାଜିକ ଦୁର୍ନୀତି ଓ ତା'ର ନିରାକରଣ

ଶ୍ରୀ ସୁଶୀଲ କୁମାର କର

"ଦୁର୍ନୀତି" ଗୋଟିଏ ଏପରି ଶବ୍ଦ, ଯାହାକି ଆଧୁନିକ ଶିକ୍ଷିତ, ସାତ୍ତ୍ୱିକ ତଥା ସଭ୍ୟ ଓ ତଥାକଥିତ ରୁଚିଶୀଳ ମାନବର ଶବ୍ଦକୋଷରେ ଅପରିଚିତ ନୁହେଁ । ଆଜିର ଉପସ୍ଥିତ ବେଳେ ଏହି "ଦୁର୍ନୀତି" ଏ ଯୁଗର ଅଗ୍ରଗାମୀ ସମାଜରେ ପ୍ରାୟ ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଛି । ଏହାର ମୂଳ କାରଣକୁ ଅନୁଧ୍ୟାନ କରି ଏହାର ନିରାକରଣ ସମ୍ବନ୍ଧରେ କିଛି ଉପାୟ ଉଦ୍ଭାବନ କରିବାକୁ ଯିବା ସମୟରେ "କମ୍ବଳଯାକ ବାଳର" ଉଦାହରଣ ମନେ ପଡ଼େ । ଏହିପରି କମ୍ବଳରୁ ବାଳ ଖୋଜି ଶେଷ କରିବା ଯେପରି କଷ୍ଟସାଧ୍ୟ, ସେହିପରି ଆଜିର ସାମାଜିକ ଜୀବନରୁ ଦୁର୍ନୀତିକୁ ମୂଳୋତ୍ପାଟନ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ହୋଇ ପଡ଼ିଛି । ତେବେ, ଏହା ଯେ ନିର୍ମୂଳ ହୋଇ ପାରିବ ନାହିଁ ଏହି ଧାରଣା ଅତି ଅମୂଳକ ଅଟେ ।

ସୂର୍ଯ୍ୟୋଦୟ ପରଠାରୁ ରାତ୍ରିର ବିଶ୍ରାମ ପର୍ଯ୍ୟନ୍ତ ଦୈନନ୍ଦିନ ଜୀବନ ଯାତ୍ରାରେ ଦୁର୍ନୀତିସହ କିପରି ସଂସ୍ରବୀ ହୋଇ ରହିଛି ତାହାର ସାମାନ୍ୟତମ ବିଶ୍ଳେଷଣ ମନରେ ଜାଣିହେବ ବ୍ୟକ୍ତି ଜୀବ- ଦିଏ । ପ୍ରାତଃରୁ ଉଠିଲାପରେ ପଠନରତ ସନ୍ତାନସନ୍ତତିଙ୍କୁ ଜଳ ନିମନ୍ତେ ଆଦେଶ ଦେବା ଅଫିସର ପିଅନକୁ କଣ୍ଟ୍ରୋଲ ଦୋକାନରେ ଧାଡ଼ିବାନ୍ଧି ଠିଆହେବା ନିମନ୍ତେ ପଠାଇବା ବା ତାଙ୍କୁ ଗୃହିଣୀଙ୍କୁ ସେହିପରି କାର୍ଯ୍ୟରେ ସାହାଯ୍ୟ କରିବା ନିମନ୍ତେ ଆଦେଶ ଦେବା, ବଜାରରେ ଟ୍ରାଫିକବେଳେ ରାସ୍ତାର ନିୟମ ନମାନି ଚାଲିବା, ଠିକ୍ ସମୟରେ ଅଫିସ୍ ନଯିବା ଓ ଅଫିସରେ ପ୍ରକୃତ କାମ ନକରି କାଳକ୍ଷେପଣ କରିବା ଆଦି ଆଜି ଦୁର୍ନୀତି ସପକ୍ଷର ବହୁସଂଖ୍ୟକର କାର୍ଯ୍ୟାଂଶ ମାତ୍ର

ପୂର୍ବକାଳରେ ଭାରତ ଭୂଖଣ୍ଡର ଅଧିବାସୀଗଣ ସାଧାରଣତଃ ଅତ୍ୟନ୍ତ ଧର୍ମବିଶ୍ୱାସୀ ଥିଲେ। ଧର୍ମଭୟରେ ଅଧର୍ମ ଓ ନୀତିହୀନ କାର୍ଯ୍ୟକରିବା ନିମନ୍ତେ ସେମାନଙ୍କ ବିବେକ ବାଧା ଦେଉଥିଲା। ଲୋକେ ଧର୍ମଭୀରୁ ହୋଇ ଅନ୍ୟମାନଙ୍କ ପରୋକ୍ଷରେ ମଧ୍ୟ ଯାହା କରଣୀୟ ଭାବୁଥିଲେ ସବୁ ଅବସ୍ଥାରେ ତାହା କରୁଥିଲେ। କିନ୍ତୁ ମିଛ ବାହାଦୁରୀ ନେବା ନିମନ୍ତେ ମିଥ୍ୟାର ଆଶ୍ରୟ ନେଉ ନଥିଲେ। ଆମ ଦେଶରେ ପୁରାତନ ପଦ୍ଧତି ବ୍ୟତୀତ, ବର୍ତ୍ତମାନର ବିଲାତରେ ସାମାଜିକ ଜୀବନକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେ ସ୍ଥାନର ଲୋକଙ୍କର ନୀତି, ନିୟମ ତଥା ଆଇନ୍ କାନୁନ୍ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଅଛି। ଶୁଣାଯାଏ ଯେ, ବିଲାତରେ କୌଣସି କୌଣସି ସମ୍ବାଦପତ୍ର ବିକ୍ରେତା ସହରର ଛକପୀଠମାନଙ୍କରେ ତାଙ୍କର ସମ୍ବାଦପତ୍ରମାନ ରଖିଦେଇ ଚାଲିଯାଆନ୍ତି। ତା'ପରେ ଗ୍ରାହକମାନେ ଆସି ସମ୍ବାଦପତ୍ରମାନ ନେଇ ଉଚିତ ମୂଲ୍ୟ ରଖିଦେଇ ଚାଲି ଯାଆନ୍ତି। ଏହିପରି ନିର୍ମଳ ବ୍ୟବହାର ବିଲାତରେ ସାମାଜିକ ଜୀବନର କେତେକାଂଶକୁ ଉଜ୍ଜ୍ୱଳତର କରାଇଦିଏ। ସେଠାକାର ଜନତା ଆଇନ୍‌କୁ ଗଭୀର ସମ୍ମାନ ଦେଖାନ୍ତି ଏବଂ ଅନ୍ୟାୟ ପଥ ଅବଲମ୍ବନ କରିବାକୁ ପରାଙ୍ମୁଖ ହୁଅନ୍ତି, ଠିକ୍ ଆମର ପୂର୍ବପୁରୁଷଗଣ ଧର୍ମ ଭୟରେ ଯେପରି ବ୍ୟବହାର ଦେଖାଉଥିଲେ। କିନ୍ତୁ ଯେଉଁ ଦେଶର ପୂର୍ବ ପୁରୁଷଗଣ ସ୍ୱୀୟଗୁଣରେ ଯଶସ୍ୱୀ ଓ ବିଶ୍ୱ ବିଜୟୀ ହୋଇ ପାରିଥିଲେ। ଠିକ୍ ସେହି ଭୂଖଣ୍ଡରେ ଭାରତ ବାସୀଗଣ ଧର୍ମଭାବ ଭୁଲି ଓ ଆଇନ୍‌କୁ ସମ୍ମାନ ଦେଖାଇ ନପାରି "ନଗର ମଧ୍ୟଭାଗରେ ପଶୁ ହତାହତ ଜ୍ଞାନ ଭୁଲିଲା ପରି" ଯା'ଇଚ୍ଛା ତାହା କରିବାକୁ ଲାଗିଲେ। ଲୋକେ ଦୁର୍ନୀତିପରାୟଣ ହୋଇ ଉଠିଲେ। ପବିତ୍ର ଶିକ୍ଷାନୁଷ୍ଠାନର ଶୁଦ୍ଧ ବାତାବରଣ ମଧ୍ୟରେ ଜ୍ଞାନ ଆରାଧନା ସ୍ୱପ୍ନ ହୋଇ ଉଠିଲା। ଲୋକେ ଦୁର୍ନୀତି ରାକ୍ଷସର କବଳରେ ସମ୍ପୂର୍ଣ୍ଣ କବଳିତ ହୋଇ ଶୂନ୍ୟଗର୍ଭ ବିଳାସରେ ମାତି ଉଠିଲେ।

ଅନୁଧ୍ୟାନ କଲେ ଦେଖାଯିବ ଯେ ବର୍ଷ ବର୍ଷ ଧରି ଏ ଦେଶର ସାମାଜିକ ଜୀବନର ଛକେ ଛକେ ଦୁର୍ନୀତି ବ୍ୟାପି ଯାଇଛି। ବସ୍ ଟିକେଟ୍, ଟ୍ରେନ୍ ଟିକେଟ୍ ବା ସିନେମା ଟିକେଟ୍ ବ୍ଲାକ୍‌ରେ କିଣିବା, ଅଟା ଓ ଚିନିକୁ ବ୍ଲାକ୍ ବଜାରରେ ବିକ୍ରି କରିବା, ଖାଦ୍ୟ ଅପମିଶ୍ରଣ କରିବା ତଥା ଔଷଧ ଅପମିଶ୍ରଣ କରିବା ଓ ପରୀକ୍ଷାରେ କପି କରି କୃତିତ୍ୱ ହାସଲ କରିବା ଆଦିର ଉଦାହରଣ ଏତେ ପ୍ରଚୁର ଭାବେ ପ୍ରଚଳିତ ହେଲା ଯେ କାଳକ୍ରମେ ଏସବୁ ନିରୀହ ଜନତାର ଦେହସୁଆ ହୋଇ ନୀତି ବା ନିୟମରେ ପରିଣତ ହେବାକୁ ବସିଥିଲା। ରେଳ, ବସ୍ ଓ ଟ୍ରାମ୍ ଆଦିର ନିୟମିତ ଭାବେ ବିଳମ୍ବ ହେବା ଶୁଣି ଲୋକେ ଆଉ ବିସ୍ମିତ ହେଉ ନ ଥିଲେ ବରଂ ସେ ଅନୁସାରେ ଷ୍ଟେସନ୍‌କୁ ଡେରିରେ ଯିବା ଆରମ୍ଭ କରିଦେଇଥିଲେ। ସଭାସମିତି କାର୍ଯ୍ୟ ଠିକ୍ ସମୟର ପରେ ନିଶ୍ଚୟ ଆରମ୍ଭ ହେବ ଜାଣି ଲୋକେ ଡେରିରେ ସଭାସମିତିକୁ ଆସିବା ସମୀଚୀନ ମନେ କରୁଥିଲେ।

"ଦୁର୍ନୀତି" ସମ୍ବନ୍ଧରେ କିଛି କହିବାକୁ ଗଲାବେଳେ ଗୋଟିଏ ଗଳ୍ପର ବିଷୟବସ୍ତୁ ମୋର ସ୍ପଷ୍ଟ ମନେ ପଡୁଛି। ଏକଦା ଜଣେ ପ୍ରଖ୍ୟାତ ଗାନ୍ଧିକ ସକାଳୁ ସକାଳୁ ଦୁର୍ନୀତି ବିରୁଦ୍ଧରେ ଲଢ଼ିବା ପାଇଁ ନିଜକୁ ପ୍ରସ୍ତୁତ କରି ସହର ଭିତରେ ବାହାରି ପଡ଼ିଲେ। ପ୍ରଥମେ ସେ ରାସ୍ତାରେ ଯାଉଯାଉ ଛକ ପାଖରେ ଦେଖିଲେ—ବସ୍ ଆସୁଛି। ଏଣୁ ସେ ବାକ୍ୟ ବ୍ୟୟ ନକରି ସେଥିରେ ଚଢ଼ିଗଲେ। କିନ୍ତୁ ରାସ୍ତାମଝିରେ ବସ୍‌ରୁ ଜଣକୁ ଓହ୍ଲାଇବା ପାଇଁ ବସ୍ ପାଖ ଅଧଘଣ୍ଟାଯାଏଁ ରହିଲା। ଯାତ୍ରୀଭିଡ଼ ଏତେ ବଡ଼ ଯାନରେ କେହି ଜଣେ ବି ଏଥିରେ ପ୍ରତିବାଦ କଲେ ନାହିଁ। କିନ୍ତୁ ଆମର ପରିଚିତ ଗାନ୍ଧିକ ଏଥିରେ କ୍ରୋଧାନ୍ୱିତ ହୋଇ ଉଠିଲେ। ଏତେ ବଡ଼ ଅନ୍ୟାୟକୁ ସହି ନପାରି ସେ ଏହାର ଦୃଢ଼ ପ୍ରତିବାଦ କଲେ। କିନ୍ତୁ ଫଳହେଲା ଠିକ୍ ଓଲଟା। ଡ୍ରାଇଭର ରାଗରେ କହିଲା "ଯାଅ, ଯାଅହେ, କାହାକୁ କହୁଛ କହ। ଆମ ବାପାର ଜଣକ ଓହ୍ଲାଉ ଥିଲେ, ସ୍ୱୟଂ ଡି. ଟି. ଏମ୍ ବାବୁଙ୍କ ଜଣକ ଓହ୍ଲାଉଥିଲା। ତା'ପରେ ଗାଡ଼ି ଛୁଟିଲା। କିନ୍ତୁ ଗାଡ଼ି ଛୁଟିଲାପରେ ହେଲେ ଡ୍ରାଇଭର, କଣ୍ଡକ୍ଟର ଉଭୟେ ମିଶି ଗାନ୍ଧିକଙ୍କୁ ବିଦ୍ରୂପ କରିବାକୁ ଲାଗିଲେ। ତା'ପରେ

ଗାନ୍ଧିଙ୍କ ଓହ୍ଲାଇବା ପାଳି ଆସିଲା । କିନ୍ତୁ ଦେଖାଗଲା, ଗାନ୍ଧିଙ୍କ ବାଟମ୍ୟାନ୍‌ର କହିବା ସତ୍ତ୍ୱେ ତାଙ୍କର ଗନ୍ତବ୍ୟ ସ୍ଥଳକୁ ଦୁଇ ଫର୍ଲଙ୍ଗ ଆଗକୁ ଯାଇ ଗାଡ଼ି ରହିଲା । ଏତେ ବଡ଼ ସାଦର ସାଫାଇ ଏଥିର ବି ପାଡ଼ି ଫିଟାଇଲେ ନାହିଁ ।

ଏହି ଉଦାହରଣଟି ଆମ ସାମାଜିକ ଚଳଣୀକୁ କେତେକାଂଶରେ ପ୍ରତିଫଳିତ କରେ । ଏହି ଯୁଗରେ ଯେଉଁ ଲୋକ ଦୁର୍ନୀତି ବିରୁଦ୍ଧରେ ଲଢ଼ିବ ସେ ପ୍ରଥମତଃ ସାହସୀ ଓ ବ୍ୟଙ୍ଗ, ବିଦ୍ରୂପ ପ୍ରତି ଅବିଚଳିତ ମନୋଭାବାପନ୍ନ ହେବାକୁ ପଡ଼ିବ । ଅନ୍ୟଥା ତା'ର ଏହି ସଂଗ୍ରାମ ଏକ ପ୍ରହସନରେ ପରିଣତ ହେବ ସାରମାନ ।

ଆମ ଦେଶରେ ଦୁଇ ବର୍ଷରେ ହେବାକୁ ଥିବା କୋଠାବାଡ଼ି ବନ୍ଧ, ଓ ପୋଲମାନ ପାଞ୍ଚ ବା ତତୋଧିକ ବର୍ଷରେ ସମାପ୍ତ ହେବା ଉଦାହରଣ ବିରଳ ନୁହେଁ । ପୁଣି ସେହି କୋଠାବାଡ଼ି ଓ ବନ୍ଧମାନ ତିଆରି ହେବାର ଅଳ୍ପ ସମୟ ପରେ ପରେ ବି ଧ୍ୱଂସ ହେଉଥିବା ବିଷୟ ଆଉ ଆଶ୍ଚର୍ଯ୍ୟଜନକ ଘଟଣା ବୋଲି ଧରାଯାଉ ନଥିଲା । ଡାକ୍ତରଙ୍କ ଅଭାବରୁ ଡାକ୍ତରଖାନାରେ ରୋଗୀ ମରିଯାଉଥିଲେ । କୃଷି ବିଶାରଦଙ୍କ ହେଳାରୁ, ଗରିବ ଚାଷୀ ଆଧୁନିକ ଚାଷ କରି ଠିକ୍ ସମୟରେ କ'ଣ କରିବାକୁ ହେବ ଜାଣିପାରୁ ନ ଥିଲା । ସମସ୍ତେ ପରସ୍ପର ଦୋଷାରୋପ କରି ନିଜ ନିଜର କାର୍ଯ୍ୟ ସୁରୁଖୁରୁରେ କରିପାରୁ ନଥିଲେ, ଫଳରେ ସ୍ୱରାଜ୍ୟ ପଞ୍ଚବାର୍ଷିକ ଯୋଜନା-ମାନ ଠିକ୍ ଭାବେ କାର୍ଯ୍ୟକାରୀ ହୋଇ ପାରୁନଥିଲା ।

ଅକ୍ଷମ, ଅପାରଗ, ଅନୁପଯୁକ୍ତ, ଅଶିକ୍ଷିତ ଓ ଅବିବେକୀ ଅଧିକାରୀଗଣ ଯେତେବେଳେ ପାଣ୍ଠି ପଦ ଆଦୋଶ ଦମନ୍ତ କେତେକ ସମୟରେ ସେମାନଙ୍କର ସମସ୍ତ ଜୀବନ କାଳାତିପାତ ହେଲାଭଳି ସୁଦ୍ଧା ସଂଗ୍ରହ କରିଥାନ୍ତି । ନ୍ୟାୟାଧୀଶଗଣ ନ୍ୟାୟ ଦେବାରେ, ଶାସନକର୍ତ୍ତାମାନେ ଶାସନକଳ ମାଧ୍ୟମରେ ଦୁର୍ନୀତିର ଆଶ୍ରୟନେଇ ରକ୍ଷକ, ଭକ୍ଷକ ହେଲାଭଳି ବ୍ୟବହାର ଦେଖାଉଥିଲେ ।

ଓଡ଼ିଶା ତଥା ଭାରତରେ ଘଟିଥିବା ଅନେକ ଦୁର୍ନୀତିର ଉଦାହରଣମାନ ଦେଇ ଏହି କ୍ଷୁଦ୍ର ପ୍ରବନ୍ଧର କଳେବର ବୃଦ୍ଧି କରିବା ଅଭିପ୍ରାୟ ନଥିଲେବି କେତୋଟି ନକହି ରହି ହେଉ ନାହିଁ । ଓଡ଼ିଶାର କେନ୍ଦୁପତ୍ର କାରବାର ଓ ସ୍ୱରାଜ୍ୟ ସ୍ତରରେ ଲାଇସେନ୍ସ ପ୍ରଦାନ ବିଷୟ ଆଦର ଓଡ଼ିଶାର କେନ୍ଦୁପତ୍ର କାରବାର ଓ ସ୍ୱରାଜ୍ୟ ସ୍ତରରେ ଲାଇସେନ୍ସ ପ୍ରଦାନ ବିଷୟ ଆଦି ବହୁମାନ ଦୁର୍ନୀତିର କଥାକାହାଣୀ ସମ୍ବନ୍ଧରେ ସ୍ପଷ୍ଟ ପ୍ରମାଣ ଦିଏ । କେବଳ ଆମ ଦେଶ ନୁହେଁ ପୃଥିବୀର ଅନ୍ୟ କେତେକ ଉନ୍ନତ ରାଷ୍ଟ୍ରମାନଙ୍କରେ ବି ଦୁର୍ନୀତି ବହୁଳ ବିସ୍ତାର ସ୍ପଷ୍ଟ ଜାଣିହୁଏ । ଆମେରିକାର ଓ୍ୱାଟରଗେଟ୍ ଭଳି ଜଘନ୍ୟ ଘଟଣା ଓ ଲକହିଡ୍ କମ୍ପାନୀର ବିମାନ ଠକେଇ ଆଦି ଘଟଣାର ମୂଳକେନ୍ଦ୍ରରେ ରହିଛି ଦୁର୍ନୀତିର ବିଷଦନ୍ତିକା ।

ନିୟମ ମୁତାବକ କାମର ପରିଧି ଭିତରୁ ଯେ ବାହାରକୁ ଯାଇ ଅନ୍ୟ କିଛି କରେ ତାକୁ ଦୁର୍ନୀତିଗ୍ରସ୍ତ ବୋଲି ନାମିତ କରାଯାଇପାରେ । ମନେ କରନ୍ତୁ, କୌଣସି ଅଫିସ୍‌ରେ ଜଣେ କିରାଣୀ ଓ ଜଣେ ଅଫିସର ଅଛନ୍ତି । ଅଫିସର୍ ଚାହାଁନ୍ତି ଯେ କିରାଣୀଟି ତାଙ୍କର କିଛି ଘରୋଇ କାମ କରିଦେବା ଭଲ ହେବ କିନ୍ତୁ ବିଚରା କିରାଣୀ ଯଦି ତାହା ମାନିବାକୁ କହି ଏଡ଼ାଇ ଦିଏ ତେବେ ଅଫିସରଙ୍କର କ୍ଷତ ଦୃଷ୍ଟିରେ ପଡ଼ି ମରେ । ଅଫିସର ଜଣକ ଏହି କ୍ଷେତ୍ରରେ ଯେ ଦୁର୍ନୀତି କରୁଛନ୍ତି ତାହା ଭୁଲିଯାଇ କିରାଣୀଟିକୁ ଉତ୍ପୀଡ଼ନ ଖରାପ ବ୍ୟବହାର ଦେଖାନ୍ତି ।

ଏହିପରି ଚରିତ୍ର ସ୍ଖଳନ ଓ ଅସାଧୁତା ଆଜିର ମାନବର ରକ୍ତ କଣିକାରେ ପଳେ ପଳେ ବ୍ୟାପିଯାଇଛି । ଏହି ହେତୁରୁ ଔଷଧ ପରି ଅତ୍ୟାବଶ୍ୟକୀୟ ପଦାର୍ଥରେ ଅପମିଶ୍ରଣ କରିବା-ପାଇଁ ସେ ପଛାଏ ନାହିଁ । ଦେଖାଯାଇଛି ଯେ ମୂଷାମାରିବାପାଇଁ ବ୍ୟବହୃତ ହେଉଥିବା ଔଷଧ ବିଷ ପଦାର୍ଥରେ ଅପମିଶ୍ରଣ ହେବାଦ୍ୱାରା ସମପରିମାଣ ଔଷଧ ପ୍ରୟୋଗ କଲେ ବି ମୂଷାମାନ

ଛନ୍ଦୁନାହାନ୍ତି । ଡୋରାମିନ୍ ଭଳି ମହୌଷଧ, ଯାହାକି ଆସନ୍ନ ମୃତ୍ୟୁ ସମୟରେ ରୋଗୀ ନିମନ୍ତେ ଅତ୍ୟନ୍ତ ଆବଶ୍ୟକ ତାହା ଆଉ କାମ ଦେଉ ନ ଥିଲା । ପ୍ରତିଷେଧକ ଔଷଧମାନ ନକଲ ହେଉଥିଲା । ଗୁଣ୍ଡଲରେ ଗୋବର, ମହୁରେ ଗୁଡ଼, ଚିନିରେ ସରୁ ବାଲି ଓ ଜିରାରେ ଡାଲି ମିଶିଥିଲେ ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ । ବ୍ୟବସାୟୀଗୋଷ୍ଠୀ ନାନା ମତ ସ୍ୱାର୍ଥକୁ ଆଗରେ ରଖି ଏହି ଅସ୍ୱସ୍ଥ ଅଭ୍ୟାସ କରି ଚାଲିଥିଲେ ଓ କାଳକ୍ରମେ ଏହା ଏକ ପ୍ରଥାରେ ପରିଣତ ହୋଇ ପଡ଼ିଥିଲା । ଜଣେ ଠିକ୍ ପଥରେ ଚାଲିବାକୁ ଚାହିଁଲେ ବି କାଳକ୍ରମେ ସେ ପଥ ପରିବର୍ତ୍ତନ କରି ଦୁର୍ନୀତିଗ୍ରସ୍ତ ହେବାକୁ ବାଧ୍ୟ ହେଉଥିଲା ।

ଯେଉଁ ଛାତ୍ରମାନେ ଠିକ୍ ଭାବେ ପାଠ ନ ଜାଣି ଅସତ୍ ଉପାୟ ଅବଲମ୍ବନ କରି ଭଲ ଡିଭି-ଜନରେ ପାସ୍ କରି ଭବିଷ୍ୟତ ଜୀବନରେ ଡାକ୍ତର ବା ଇଞ୍ଜିନିୟର ହୋଇ ଆସନ୍ତି ସେତେବେଳେ ରୋଗୀ ସେବା ବା ଭଲଭାବେ ପୋଲ୍ ତିଆରି କରିବା ସେମାନଙ୍କ ପକ୍ଷରେ ଆଦୌ ସମ୍ଭବ ନୁହେଁ ।

ସମାଜରେ ଆମଭଳି ସାଧାରଣ ଲୋକେ ଅନେକ କଥା ଜାଣି ନଜାଣିଲା ପରି ରହୁଥିବାରୁ ଦୁର୍ନୀତିର ଚେର ଆମ ସମାଜରେ ଦ୍ରୁତ ବେଗରେ ମାଡ଼ି ଚାଲିଥିଲା । ଦୁର୍ନୀତିଗ୍ରସ୍ତ ଅଫିସର-ମାନେ କ୍ଷମତାର ଅପବ୍ୟବହାର କରି ନିରୀହ ଲୋକଙ୍କର ରକ୍ତ ଟିକେ ଟିକେ ଶୋଷିବାକୁ ପଛଘୁଞ୍ଚା ଦେଉନଥିଲେ । ସରକାରୀ କଳ ଜର୍ଜରିତ ହୋଇ ଆସିଥିଲା । ଧନପତିଗଣ ଆଇନ୍‌କୁ ନିଜର କବ୍‌ଜାରେ କରି ସେମାନଙ୍କର ସୁବିଧାନୁଯାୟୀ ପରିବର୍ତ୍ତନ କରିପାରୁଥିଲେ । ତାଙ୍କର ହାତ ମୁଠାରେ ମନ୍ତ୍ରୀ ଓ ନେତାମାନେ ବାନ୍ଧି ହୋଇ ଅଣ୍ଟ୍ରସ୍ତ ନେଇଥିଲେ । ଦୁର୍ବଳ ଅଥଚ ନୀତିବାନ୍ ଲୋକ ଯାହା କହିବାକୁ ଚାହୁଁଥିଲା, ବଳଶାଳୀ ଦୁର୍ନୀତିଗ୍ରସ୍ତ ଦାନବର ଫୁଙ୍କାରରେ ତାହା ଧୂଳିସାତ୍ ହୋଇ ଯାଉଥିଲା । ସେ କେବଳ କାନ୍ଦି କାନ୍ଦି କର୍ମ ଅଦାଲତ ରହୁଥିଲା ।

ଯୁଗ ଯୁଗ ଧରି ବିଭିନ୍ନ ଦେଶରେ ଦୁର୍ନୀତି ଭିନ୍ନ ଭିନ୍ନ ପରିବେଶରେ ବିଭିନ୍ନ ଭାବରେ ଦେଖା ଦେଇଆସିଛି । ପୁରାଣ ଯୁଗରେ ବି ବଳବାନ୍ ଦାନବ ଲଙ୍କାଧିପତି ରାବଣ ସ୍ୱର୍ଗର ଦେବତାମାନଙ୍କୁ ନିଜ ଘରର ଖଟାଇ ପଦସେବା କରାଉଥିଲା । କୁରୁରାଜପତି ଦୁର୍ଯ୍ୟୋଧନ, ପାଣ୍ଡବ ଭାତୃବର୍ଗଙ୍କୁ ବନସ୍ତ କରାଇ, ଦ୍ରୌପଦୀଙ୍କୁ ସଭାସ୍ଥଳୀରେ ନଗ୍ନକରିବା ନିମନ୍ତେ ଆଦେଶ ଦେଇ ଦୁର୍ନୀତିର ସୀମା ଲଙ୍ଘନ କରି ଯାଇଛି । ଦୁର୍ନୀତି କୌଣସି ବିଦେଶାଗତ ଅତିଥି ନୁହେଁ । ପ୍ରତିଟି ମନୁଷ୍ୟର ଅନ୍ତଃସ୍ଥଳରେ ଏହି ଦଳଭାନ ମନୋବୃତ୍ତି ବସା ବାନ୍ଧି ରହିଥାଏ । ସୁଯୋଗ ଓ ସୁବିଧା ଉପଲବ୍ଧ ହେବା ମାତ୍ରେ ତା'ର ବହିଃପ୍ରକାଶ ହୁଏ ।

ଶୈଶବରୁ ଆମମାନଙ୍କୁ ପିତାମାତା, ଗୁରୁଜନ ଓ ସମାଜର ପ୍ରତ୍ୟେକ ସ୍ୱତଶୀଳ ବ୍ୟକ୍ତି ସତ୍ୟ କହିବା ନିମନ୍ତେ ସର୍ବଦା କହି ଆସୁଥିଲେ ମଧ୍ୟ ସୁଯୋଗ ପାଇଲେ ଆମେ ମିଛ ନକହି ରହିପାରୁ ନାହିଁ । ମିଛ କହିବା ବି ଦୁର୍ନୀତି ପରିବାରର ଗୋଟିଏ ସକ୍ରିୟ ସଭ୍ୟ—ଏହା କହିବା ବାହୁଲ୍ୟ ମାତ୍ର ।

ଦୀର୍ଘକାଳ ଧରି ଦୁର୍ନୀତିଗ୍ରସ୍ତ ସମାଜରେ ତଳେ ତଳେ ଦଗ୍ଧ ହୋଇ ସାରିଲା ପରେ ଅସୁମାରୀ ଭାରତୀୟ ଜନତାଙ୍କ ନିମନ୍ତେ "ନବରତ୍ନ" ଦେଖାଦେଇଛନ୍ତି । ନିରୁପାୟ ପରିସ୍ଥିତି ଶୋଷିତ ହୋଇ ସାରିଲା ପରେ ସମସ୍ତଙ୍କ ମନରେ ଚେତନା ଉଦୟ ହୋଇଛି । ଲାଭଖୋର ବ୍ୟବସାୟୀଗଣ ରକ୍ତ ଶୋଷଣରୁ କ୍ଷାନ୍ତ ହୋଇଛନ୍ତି । ସାଧାରଣ ଦରିଦ୍ର ଜନତା ହର୍ଷୋତ୍ଫୁଲ୍ଲ ହୋଇଛନ୍ତି । ତଥାପି ଏହି କାମ ପୂର୍ଣ୍ଣ ହୋଇ ନାହିଁ । ଆମକୁ ଆହୁରି ବହୁଦୂର ଅତିକ୍ରମି ଯିବାକୁ ପଡ଼ିବ । ଏକ ସମ୍ପୂର୍ଣ୍ଣ ସୁସ୍ଥ ଏବଂ ନିର୍ମଳ ସାମାଜିକ ଜୀବନ ସ୍ଥାପନକରିବା

ନିମନ୍ତେ ସମାଜରୁ ଏହି ରାକ୍ଷସର ବିଲୋପ ସାଧନ କରିବାକୁ ହେଲେ, ଅଧିକାରୀଗଣ ଓ ଜନସାଧାରଣେ ପ୍ରତ୍ୟେକ ଦୃଢ଼ମନା ହୋଇ ଶପଥକରି ନିମ୍ନ କାରଣ ତଥା ପଥମାନଙ୍କୁ ନିୟମିତ-ଭାବେ ପାଳନ କରିବା ଆବଶ୍ୟକ ।

୧ । ଉଚ୍ଚ ଶିକ୍ଷା ପ୍ରଥା ଦୃଢ଼ ତଥା ଗୁରୁତ୍ୱପୂର୍ଣ୍ଣ ହେବା ଉଚିତ ।

୨ । ଧର୍ମ ବା ଆଇନକୁ ଜୀବନର ପଦେ ପଦେ ପାଳନ କରିବା ସମସ୍ତଙ୍କର ବ୍ରତ ହେବା ଉଚିତ । ଏହି ସମ୍ବନ୍ଧରେ ଧନୀ, ଦରିଦ୍ର, ଉଚ୍ଚ, ନୀଚ, ପୁରୁଷ, ସ୍ତ୍ରୀ, ଆଦି ସମସ୍ତ ଭେଦଭାବ ଦୂର ହେବା ଉଚିତ ।

୩ । ପ୍ରତ୍ୟେକେ ବାକ୍ୟବୀର ନହୋଇ କର୍ମବୀର ହେବା ଉଚିତ ।

୪ । ଚରିତ୍ର ପ୍ରତି ଯଥେଷ୍ଟ ନଜର ଦେବା ଉଚିତ ଓ ପୂଜ୍ୟାପୂଜାର ବ୍ୟତିକ୍ରମ ନକରିବା ନିମନ୍ତେ ଶପଥ ଗ୍ରହଣ କରିବା ଆବଶ୍ୟକ ।

୫ । ଅବୈଧ ପନ୍ଥା ଅବଲମ୍ବନ କରି ପରିସ୍ଥିତିର ସୁଯୋଗ ନେବାଲେ ମନୋବୃତ୍ତି ଧ୍ୱଂସ କରିବା ଉଚିତ ।

୬ । ଅଯୋଗ୍ୟ ଓ ଅନୁପଯୁକ୍ତ ବ୍ୟକ୍ତିଗଣ ସେମାନଙ୍କର ଅସ୍ୱଭାବଦ୍ୱାରେ କାର୍ଯ୍ୟକରିବା ସର୍ବଦା ଅଗ୍ରହଣୀୟ ।

୭ । ଆଇନର ଧାରେ ଧାରେ ଯେତେ କଷ୍ଟ ହେଲେବି ଚଳିବା ଉଚିତ ।

୮ । ନିଜର ଦୋଷ ଓ ଦୁର୍ବଳତାକୁ ମାନିନେବା ଭଳି ସତ୍‌ସାହସକୁ ବୃଦ୍ଧି କରିବା ଉଚିତ ଓ ଏହା ସ୍ଥଳବିଶେଷରେ ପୁରସ୍କୃତ ହେବା ଉଚିତ୍ ।

୯ । ନ୍ୟାୟ ଓ ସତ୍ୟ ଆଗରେ ଜ୍ଞାତି ସହୋଦର ଆଦିଙ୍କ ପ୍ରତି ଦୟାଭାବ ଦେଖାଇବା ଭଳି ସ୍ୱଭାବ ପରିହାର କରି ନିର୍ମଳ ହୃଦୟଯୁକ୍ତ ହେବା ଉଚିତ ।

୧୦ । କୌଣସି କାର୍ଯ୍ୟନକରି ପୁରସ୍କାର ପାଇବାପାଇଁ ଏକ ଅଯଥା ଆଶା ରଖିବା ଆଦୌ ଗ୍ରହଣୀୟ ନୁହେଁ ।

୧୧ । ଚରିତ୍ର ଗଠନ ଦିଗରେ ବ୍ରତୀହୋଇ କଷ୍ଟସହିଷ୍ଣୁ ହେଲେ ଦୁର୍ନୀତି ଆପେ ଆପେ ଦୂର ହୋଇଯିବ ।

●

ପ୍ଲାନସେଲ୍ ଯୋଜନା ଓ
ସମନ୍ୱୟବିଭାଗ ଭୁବନେଶ୍ୱର

- ମୋଟ ଆୟତନ—୫୭ ସେ. ମି. × ୪୧·୫୦ ସେ. ମି.
- ପ୍ରତି ପୃଷ୍ଠାର ଛାପା ଆୟତନ—୫୦ ସେ. ମି. × ୩୭·୫୦ ସେ. ମି
- ପ୍ରତି କଲମ୍‌ର ଓସାର—୪·୫୦ ସେ. ମି
- ପ୍ରତି କଲମ୍‌ର ଦୈର୍ଘ୍ୟ—୫୦ ସେ. ମି.
- ପ୍ରତ୍ୟେକ ପୃଷ୍ଠାର କଲମ ସଂଖ୍ୟା—୮
- ପ୍ରତି ପ୍ୟାନେଲ୍‌ର ଆୟତନ—୧୧ ସେ. ମି. × ୭ ସେ. ମି.
- ହାଫ୍‌ଟୋନ୍ ସ୍କ୍ରିନ୍—୭୫ ପର୍ଯ୍ୟନ୍ତ



"ଆପଣଙ୍କ ପାଖରେ ଗୋଟାଏ କଥା ଥିଲା, କିଛି ଶୁଣିବେ କି" ?—ହଠାତ୍ ମଟର ଅଟକି ଗଲା,—ମୋ ଡାହାଣ ପାଖରେ ଗାଡ଼ି ଭିତରୁ କିଏ କହିବାର ଶୁଣାଗଲା । ଭଦ୍ର-ବ୍ୟକ୍ତିଙ୍କୁ ଅନାଇ ମୁଁ ଚିହ୍ନି ନେଲି—ସେ ଅପର୍ଣ୍ଣି ବଳିୟାର୍ସିଂ, ଜଣପଡ଼ାର । ପ୍ରତି ନମସ୍କାର ଜଣାଇ ପଚାରିଲି "କ'ଣ କହୁଛନ୍ତି ?"

"ଆପଣ କିଛି ଜଣପଡ଼ା ଆସିଚ୍ଛନ୍ତି କି ?" "ନାହିଁ ! କ'ଣ ବର୍ତ୍ତମାନ ?"

"ହଁ—ମୋ ସାଙ୍ଗରେ ଏଇ ଗାଡ଼ିରେ ଆସନ୍ତୁ ।"



ଗାଡ଼ିରେ ବସି ଚାଲିଲି ବହୁ ଦିନର ଫୋର୍ଡ଼ ଗାଡ଼ି ବାଟରେ କିଛି ଅସୁବିଧା ନକରି ମୋତେ ଜଣପଡ଼ା ଯାଏ ଖୁସିରେ ନେଇ ଚାଲିଲା, କିନ୍ତୁ ସମସ୍ତ ନୀରବତା ପରେ ମୁଁ ପଚାରିଲି "ମହାଶୟ ! ଘଟଣା କ'ଣ ?"

"ଘଟଣା କିଛି ନାହିଁ । ଝିପା କିଛି ଅସୁସ୍ଥ ହୋଇ ପଡ଼ିଛି ।" "ଆଚ୍ଛା ଆପଣ ଏଇ ଝିପାଟିକୁ ପାଇଲେ କେଉଁଠୁ ?"

"ସେ ଗୋଟାଏ ଜାମ୍ବାଣୀ ସୁଅ ! ଆମେ ସବୁ ଜଙ୍ଗଲ ପଟ୍ଟା ନେଇ କାଠ ସଂଗ୍ରହ କରୁଥାଉ । ବେଳେବେଳେ ଗୋଟାଏ ଗୋଟାଏ ଜଙ୍ଗଲରେ ଆମକୁ ବହୁଦିନ ଧରି ରହିବାକୁ ହୁଏ । ଅସ୍ଥାୟୀ କୁଡ଼ିଆ କରି ମଧ୍ୟ କର୍ମଚାରୀମାନେ ରହିଥାଆନ୍ତି ।

ଅରେ ପଞ୍ଚିଆ ଜଙ୍ଗଲରେ ଆମକୁ ବନ୍ଧୁବନ ଧରି ରହିବାକୁ ପଡ଼ୁଥାଏ- ଦେଶୀ କୁକୁରଟିଏ ଆସି ଆମ ସାଙ୍ଗରେ ବନ୍ଧୁତା କରି ବସିଲା । କୁକୁରଙ୍କର ଲକ୍ଷଣ ତ ଆପଣ କହୁଥିବେ ସେଦିନ କୁଲି କୁଟା ତା'ର ଭଳି ସମସ୍ତଙ୍କୁ ଫଲ୍ଲ କନ୍ୟକରି ପିଲଙ୍କୁ ବଡ଼ କରିବାପାଇଁ ଏକାନ୍ତ ଶ୍ଵେତ୍ର ହେବାର ଅଭିନୟ କରିପକାଏ । ଏ କୁକୁରଟି ତା'ର ପିଲାବେଳେ ମଧ୍ୟ ସେହିପରି ଅଭିନୟ କରି ବସିଲା ।

ଦିନେ ଆମେ ସ୍ପଷ୍ଟରେ ଦେଖିଲୁ—ପଲେ ପାତ୍ର ବଲାଆ ଜଙ୍ଗଲ ଭିତର ଦେଇ ବିସ୍ମୟକର । ହଠାତ୍ ତା' ଭିତରୁ ଦଳପତିଟି ଦାନ୍ତାଣିଆସି ଆମ ବନ୍ଧୁଣୀ କୁକୁରଟିକୁ ତା'ର ବାହୁପାଶରେ ଗ୍ରହଣ କରିନେଲା । ମନରେ କୌତୂହଳ ଜାତ ହେଲା ଯେ ଛୁଆଗୁଡ଼ିକ ଡାକୋଟି କିପରି ହେବେ ? ଦେଖୁ ଦେଖୁ ଦୁଇ ମାସ ବିତିଗଲା । କୁକୁରଟି ଛଅଗୋଟି ପିଲା ଜନ୍ମ କଲା । ପିଲାଗୁଡ଼ିକର ଆକୃତି ଠିକ୍ ପାତ୍ର ବଲାଆପରି ଦେଖିବାକୁ । ତା ମଧ୍ୟରୁ ଅନ୍ୟ ଦୁଇଟିକୁ ବାଣ୍ଡିଦେଇ ମାଈ ଛୁଆଟିଏ ମୁଁ ଆଣି ମିତଣୀଙ୍କୁ ଆଦର ଦେଇଥିଲି । (ଦି ଭରତ ସିଂହ ନରପଡ଼ାର ସ୍ଵନାମଧନ୍ୟ ଜମିଦାର, ତାଙ୍କର ତାଲୁକ ମାନ୍ୟବର ରଘୁନାଥ ସିଂହ, ବର୍ତ୍ତମାନ ବିଧାନ ସଭାର ସଦସ୍ୟ. ତାଙ୍କର ସ୍ତ୍ରୀ ଓରଫ ଶ୍ରୀ ରଘୁନାଥ ସିଂହଙ୍କର ସାନ ଭୋହୁ ଶ୍ରୀମତୀ ପ୍ରମୋଦା ସିଂହ)ଙ୍କ କଥାଟି ଶୁଣି ମୋର ମନରେ ଆହୁରି କୌତୂହଳ ସୃଷ୍ଟି ହେଲା ଯେ କେତେଦିନର କୁକୁର ଛୁଆଟି ଶ୍ରୀମତୀ ସିଂହଙ୍କ ତୋଳକୁ ଆସିଥିଲା ଓ ସେ ତାକୁ କିପରି ପାଳିଲେ, ମୋ ମୁହଁରୁ ପ୍ରଶ୍ନ ବାହାରିବା ପୂର୍ବରୁ ଶ୍ରୀ ବଳସ୍ଵାର ସିଂ ପୁଣି ଆରମ୍ଭ କଲେ ।

—"ଆପଣ ତ ଜାଣନ୍ତି—ଟିକା ଅପା ଆପଣଙ୍କର ସବୁ ପଶୁପକ୍ଷୀଙ୍କୁ ପିଲାପଣ ସ୍ନେହ କରନ୍ତି । ଟିପାଟି ବାରଦିନର କୁକୁର ଛୁଆ । ତାକୁ ଦିନରାତି କୋଳରେ ଧରି ରୁଳାରେ ଦୁଧ ପିଆଇ ସେ ବଞ୍ଚାଇଲେ । ଏବେ ସେ ଠିକ୍ ମଣିଷପରି ତାଙ୍କ କଥା ମାନୁଛି ।"

"ହଁ ତା-ତ ମୁଁ ଦେଖୁଛି—ସେ ତ ଆଜିଟିକେ ଶିକ୍ଷା ପାଇଲେ ପୋଲିସ କାମ ପୁରା କରିଦେବ । ଆମେ ଆଇ. ଜି. ସାହେବଙ୍କୁ ଏ ବିଷୟରେ ଜଣାଇବା ! ଆମେ ଦେଶୀ କୁକୁରଙ୍କୁ ବି ପୋଲିସ କାମରେ ଲଗାଇବା ।"

"ହଁ ଭଲ ହେବ—ସେଦିନ ଆପଣ ପରା ଝାଙ୍ଗୀ ବସ୍ତ୍ରାଳୟରେ ଲୋକ ଲୁଚାଇ ଟିପାକୁ ତା ଜୋତା ଶୁଙ୍ଘାଇ ଆଣିଥିଲେ ! ସେ ଏତେ ଲୋକଙ୍କ ଭିତରୁ କେମିତି ସେ ଲୋକକୁ ଧରିଲା ? ଆପଣ ଗୋବର୍ଦ୍ଧନ ବାବୁ ଶିକ୍ଷକ ନଟ୍ରୋଲ ଏ ପୋଲିସ କୁକୁରଙ୍କ ଟ୍ରେନିଂପାଇଁ କିଛି କାମ କଲେ ସରକାର ବିଶେଷ ଲାଭବାନ ହୁଅନ୍ତେ ।"

"ପୋଲିସ ବିଭାଗ ସେ ବିଷୟରେ ଚେଷ୍ଟା କରୁଛନ୍ତି । ଗୁଡ଼ିଲୁ, ମଜାପା ଟିପାକୁ ଭଲକରି ଦେଖିବା । ଗାଡ଼ି ରହିଲା ଆସି ଜରିପଡ଼ାରେ—ମୁଁ ଗାଡ଼ିରୁ ଓହ୍ଲାଇଲି ଶ୍ରୀ ସିଂହଙ୍କ ସହ, ଟିକା ଅପା ଆସି ପୁଅକୁ ମା ପାଉଛନ୍ତି ନେଲାଭଳି ମୋତେ ଭିତରକୁ ଡାକି ନେଲେ । ତାଙ୍କ ପୁଅ "ଦିଲ୍ଲୀପ" (ବୁଡ୍ଡୁ) ବି ଆସି ନମସ୍କାର କଲା । ସିଂହ ବଂଶ ପିଲାମାନଙ୍କର ଭଦ୍ର ବ୍ୟବହାର ବାସ୍ତବିକ ମୋତେ ଅଭିଭୂତ କରି ଦେଇଛି ! ପ୍ରଥମେ ମୋପାଇଁ ଖାଦ୍ୟର ବ୍ୟବସ୍ଥା ହେଲା । ତାପରେ ଟିପାର ରୋଗ ବିଷୟରେ ଅପା କହିଲେ ସେ ପ୍ରକୃତରେ ଗର୍ଭ ହୋଇଛି କି ନାହିଁ ଜଣା ନାହିଁ—ତଥାପି ପେଟ ବଢ଼ିଛି । ଶୋଇରହି ଚିତ୍କାର କରୁଛି ।" "ଥର୍ମୋମିଟର ଆଣିଲେ"—ଥର୍ମୋମିଟର ଅଣାଯାଇ ଜ୍ଵର ଦେଖାଗଲା ୧୦୫° ଡିଗ୍ରୀ ଜ୍ଵର । କୁକୁରଙ୍କର ସାଧାରଣ ଉତ୍ତାପ ୧୦୧.୭ ଡିଗ୍ରୀ । ଟେଣ୍ଟ ସନ୍ଦେହ ହେଲା । ତାପରେ ଝାଙ୍ଗୀ ବାଲୁଗାଁରୁ ବିଭିନ୍ନ ଡାକ୍ତର ଆସିଲେ । ଶେଷକୁ ଠିକ୍ ନକରି ପାରି ଟିପା ଆସିଲା ଭୁବନେଶ୍ଵର । "ଏକ୍ସ-ରେ" କରାଯିବାପରେ ଅପରେସନ ହୋଇ ପେଟରୁ ମଲା ପିଲାଟିଏ ବାହାରିଲା ।

ଶ୍ରୀମତୀ ବସୁ ଓ ତାଙ୍କର ବୋହୂ ବହୁ ସେବା ଯତ୍ନ କରି ତାକୁ ଭଲ କଲେ । ମୁଁ ତେବେ ଭାବି ପିଲେଇ ଫିଟେଇଲି । ମନରେ ମୋର ଥାଏ "ଟିପୀ"ଙ୍କୁ ପାଥେୟ କରି ଓଡ଼ିଶାରୁ ଗୋଟିଏ ନୂଆ ଧରଣର କାର୍ଯ୍ୟକାରୀ ଜାତୀୟ କୁକୁର ସୃଷ୍ଟି କରି ପୃଥିବୀରେ ଚହଲ ପକାଇ ଦେବା ।

ମାତ୍ର ହାୟ ! ମୋର ସବୁ କଳ୍ପନାକୁ ମାଟିରେ ମିଶାଇ—ଦିନେ "କାନାଇନ-ଡିଷ୍ଟେମ୍ପର" ଜ୍ୱରରେ ଆକ୍ରାନ୍ତ ହୋଇ ଟିପୀ ସ୍ୱର୍ଗାରୋହଣ କଲା । ତାର ପାଳକ ମାତା ଶ୍ରୀମତୀ ପ୍ରମୋଦା ବସୁଙ୍କର ଦୁଃଖଭରା କାନ୍ଦଣା ମୋର ହୃଦୟ ବିଦାରି ଦେଉଥାଏ, ଏତିକିବେଳେ ଓଡ଼ିଶା ପୋଲିସ ମୋତେ ସ୍ପେଶିଆଲ ଅଫିସରରୂପେ ସ୍ୱାଗତ ଜଣାଇଲେ ତାଙ୍କ ସନ୍ଧାନୀ ଶ୍ୱାନ ସଂସ୍ଥା (Detective Dog squad)ରେ ଯୋଗ ଦେବାକୁ । ଘଟଣା କାଲିପରି ଲାଗୁଛି । ବର୍ଷଟିଏ ବିତି ଗଲାଣି । ଶ୍ରୀମତୀ ବସୁ ମୋତେ କଲ୍ୟାଣ କରି ସେଦିନ କହିଥିଲେ "ମା-ବାପ-ର ଏଥର ନାଁ କର ।" ତାଙ୍କର ସେହି କଲ୍ୟାଣକୁ ପାଥେୟକରି ମୁଁ ଆସି ଶ୍ରୀଯୁକ୍ତ ରଘୁ ବସୁଙ୍କୁ ଭେଟିଥିଲି—ସନ୍ଧାନୀଶ୍ୱାନର ଶିକ୍ଷା ବିଷୟକୁ ମୋର ଡେପୁଟେସନ ବିଷୟରେ କହିବାକୁ । ଶ୍ରୀଯୁକ୍ତ ବସୁଙ୍କର ଅମାୟିକ ବ୍ୟବହାର ଓ ପ୍ରେରଣା ମୋର ଆଜିଯାଏ ମନେଅଛି ।

"ଦେଖନ୍ତୁ, ଆପଣ ଗୋଟାଏ ଭଲ କାମରେ ଯାଉଛନ୍ତି—ମୁଁ ସାହାଯ୍ୟ କରିବି ନାହିଁ ? କିନ୍ତୁ ଦୟାକରି ମୋର ଭୁବନେଶ୍ୱର ବସାକୁ.... ?"

ମୋ କାମ ମୁଁ ପୁଣି ଦେଖା କରିବି ? ଯାହାହେଉ ପରଦିନ ମୋର ଡେପୁଟେସନ ଅର୍ଡ଼ର ବି ମିଳିଗଲା, ମାତ୍ର ବସୁ ବଂଶର ପ୍ରେରଣା ମୋର ମନରେ ଥାଏ ।

ଜଏନ କରି ତତ୍‌କାଳୀନ କ୍ରାଇମ୍ ବ୍ରାଞ୍ଚର ଏସ: ପି: ସାହେବ ଶ୍ରୀଯୁକ୍ତ ଆର. ଏନ. ପଟ୍ଟନାୟକଙ୍କୁ ଭେଟିଲି । ପ୍ରଥମେ ତାଙ୍କ ସାଙ୍ଗରେ ମୋର ଏଇ "ପାତ୍ର-ବଳଅ" କଥା ପଡ଼ିଲା, ସଙ୍ଗେ ସଙ୍ଗେ ଶ୍ରୀଯୁକ୍ତ ପଟ୍ଟନାୟକ "ଫୁଲବାଣୀର" ଫୁଲବାଣୀ ପଏଣ୍ଟର କଥା କହିଲେ । ମୋର ଦେଶୀୟ କୁକୁର ଉପରେ ଗବେଷଣାକୁ ପସନ୍ଦକରି ତତ୍‌କାଳୀନ ଡି: ଆଇ: ଜି: ଶ୍ରୀଯୁକ୍ତ ବି. ଜେ. ପାଣିଗ୍ରାହୀଙ୍କ ଅନୁମତିକ୍ରମେ ଆଇ: ଜି: ଶ୍ରୀଯୁକ୍ତ ଏନ୍. ସ୍ୱାଇଁଙ୍କୁ ଭେଟିବାକୁ ପରାମର୍ଶ ଦେଲେ ।

ପ୍ରଥମେ ଭେଟରେ ମୋର ଧାରଣା ନଥିଲା ଯେ ଆଇ: ଜି: ସାହେବ ମୋ କଥାକୁ ଏତେଶୀଘ୍ର ଗ୍ରହଣ କରିନେବେ । ମୋର ଗବେଷଣା କଥା ଶୁଣି—ସେ ବିଶେଷ ଖୁସି ହେଲେ । ଅଳ୍ପଦିନ ପରେ ପୁଣି ସେ ଏ ବିଷୟରେ ଆଲୋଚନା କରିବାପାଇଁ ଘରୋଇ ବିଭାଗ ସଚିବ ମାନ୍ୟବର ଶ୍ରୀଯୁକ୍ତ ବି: ଆର. ପଟେଲଙ୍କ ସହିତ ଭେଟିବାକୁ ନିର୍ଦ୍ଦେଶ ଦେଲେ ।

ଦେଖିଲି ଶ୍ରୀଯୁକ୍ତ ପଟେଲ ମୋ ପ୍ରସ୍ତାବରେ ବିଶେଷ ଆନନ୍ଦିତ । ସେ ବି ଦେଶୀ କୁକୁର ବିଷୟରେ ବହୁତ ଜାଣିଛନ୍ତି । ପରେ ଜାଣିଲି ଶ୍ରୀଯୁକ୍ତ ପଟେଲ, ଶ୍ରୀଯୁକ୍ତ ରଘୁନାଥ ବସୁଙ୍କର ଶିଷ୍ୟ । ଅଦ୍ଭୁତ ପ୍ରକାରରେ ଗୋଟିଏ ପାଖରୁ ମୋ ଆଡ଼କୁ ଏ କାମରେ ପ୍ରେରଣା ସ୍ରୋତ ବହି ଆସୁଛି । ଏ ଭିତରେ କେତେଦିନ ବିତିଗଲା । ଆଇ: ଜି: ସାହେବଙ୍କଠାରୁ ବାରମ୍ବାର ପ୍ରେରଣା ପାଇବି ପାଠ ବଳିଆ ପାଇବାର ସୁଯୋଗ ମୁଁ ପାଇପାରୁ ନଥାଏ । ହଠାତ୍ ଦିନେ ଦେଖାହୁଏ ଶ୍ରୀମତୀ ଶ୍ରୀପାଳଙ୍କଙ୍କ ସହିତ । କଥା ହେବାପରେ ଶ୍ରୀମତୀ ଜୀ—ମୋତେ ଆଶୀର୍ବାଦ କରିବା ସଙ୍ଗେ ସଙ୍ଗେ ଏ ବିଷୟରେ ଚିଫ୍ ସ୍ପେଶାଲ କନ୍‌ଜରଭେଟର ଅଫ୍ ଫରେଷ୍ଟ ଶ୍ରୀଯୁକ୍ତ ଶ୍ରୀପାଳଙ୍କଙ୍କୁ ଥରେ ଭେଟିବାକୁ ପରାମର୍ଶ ଦିଅନ୍ତି । ଶ୍ରୀଯୁକ୍ତ ଜୀ ସେଦିନ ଅସୁସ୍ଥ । ତଥାପି

ମୋତେ ଭେଟିବାର ସୁଯୋଗ ଦେଇ ବହୁ ସମୟ ଧରି ମୋ ସହିତ—"ପାଣ୍ଡ ବଳିଆ", ପାଣ୍ଡ ବଳିଆ, ବଡ଼ାଣ ବୈପାରି, ଶ୍ୱେତ ଗର୍ଧିଆ ଇତ୍ୟାଦି ବିଷୟରେ ଆଲୋଚନା କଲେ । ସେ ମଧ୍ୟ ମୋର ଉଦ୍ୟମକୁ ପ୍ରଶଂସା କଲେ । ମୋ ସହିତ ଏ ବିଷୟରେ ପୂର୍ଣ୍ଣ ସହଯୋଗ କରିବାକୁ ସମ୍ମତ ହେଲେ ।

ଠିକ୍ ଏତିକି ବେଳକୁ ପ୍ରଖ୍ୟାତ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତିଙ୍କଠାରୁ ବିଭାଗୀୟ କୁକୁର ବିଷୟରେ ଜାଣି ବର୍ତ୍ତମାନର ଡ଼ି: ଆଇ: ଜି: ସାହେବ ଶ୍ରୀଯୁକ୍ତ ଡ଼. ଏମ୍. ମିଶ୍ର ଯେ କି ସହାନି ଶ୍ୱାନ ସଂସ୍ଥାର ତାଲିମ କେନ୍ଦ୍ରର ଜନ୍ମଦାତା—ମୋତେ ଦେଶୀୟ କୁକୁରମାନଙ୍କର ଖୋଜ ନେବାକୁ ନିର୍ଦ୍ଦେଶ ଦେଲେ ଓ ମୋର ଅନୁରୋଧ କ୍ରମେ ଶ୍ରୀଯୁକ୍ତ ସ୍ୱପାଇଙ୍କୁ ପତ୍ର ଲେଖିଲେ । ଫଳରେ ଶ୍ରୀ ନି ଜଙ୍ଗଲ ବିଭାଗର ବରିଷ୍ଠ ଅଫିସରଙ୍କୁ ଏ ବିଷୟରେ ନିର୍ଦ୍ଦେଶ ଦେଲେ ।

ଜୟପୁରସ୍ଥ ସହକାରୀ କନ୍‌ଜରଭେଟର ଅଫ୍ ଫରେଷ୍ଟ ଶ୍ରୀ ଆର୍. ଏମ୍. ପୂଜାରୀ ଆସିଲେ ମୋତେ ଭେଟିବାକୁ । ତାଙ୍କୁ ସାଙ୍ଗରେ ନେଇ ମୁଁ କ୍ରାଇମ ବ୍ରାଞ୍ଚର ଏସ୍. ପି. ଶ୍ରୀଯୁକ୍ତ ଏ. କେ. ପଟ୍ଟନାୟକଙ୍କୁ ଭେଟିଲି । ତାଙ୍କର ଉତ୍ସାହ ଦେଖି ଶ୍ରୀଯୁକ୍ତ ପଟ୍ଟନାୟକ ତାଙ୍କୁ ପୋଷା ଦେଶୀୟ କୁକୁରଙ୍କର କେତୋଟି ଫଟୋ ପଠାଇବାକୁ ଅନୁରୋଧ କରି ପତ୍ର ଦେଲେ । ଅତି ଅଳ୍ପଦିନ ମଧ୍ୟରେ ଶ୍ରୀ ପୂଜାରୀ "ପାଣ୍ଡ ବଳିଆ ବା ବୈପାରୀ କୁକୁରର କେତୋଟି ଫଟୋ ପଠାଇ ଦେଲେ । ଫଟୋଗୁଡ଼ିକୁ ଦେଖିଲେ—ବାସ୍ତବିକ ଜଣାଯିବ ଏମାନେ ଦେଖିବାକୁ କେତେ ସୁନ୍ଦର—ଫଟୋ ମଧ୍ୟରୁ ଏକ ନମ୍ବର ଫଟୋରେ ଥିବା କୁକୁରଟିର ମାଲିକ ଶ୍ରୀ ଗୋପୀନାଥ ପୂଜାରୀଙ୍କ ଘରୁ ହୋଇଥିବା ଗୋଟିଏ ଚୋରିରେ—ଶୁଙ୍ଘି ଶୁଙ୍ଘି ଚୋରର ଘରଯାଏ




ଯାଇ ଧରିଥିଲା । ମାତ୍ର ଶ୍ରୀ ପୂଜାରୀ ସେତେବେଳେ କିଛି ବୁଝି ପାରିନଥିଲେ । ଶ୍ରୀ ପୂଜାରୀଙ୍କ ଘର କୋରାପୁଟ ଜିଲ୍ଲାର ମିନଜାରେ । ଥାନା ତାଙ୍କର ପାପଡ଼ାହାଣ୍ଡି ।

ଦୁଇ ନମ୍ବର ଛବିରେ ଥିବା କୁକୁରଟିର ମାଲିକ ହେଲେ ସେଇ ମିନଜାରେ ଶ୍ରୀ କାର୍ତ୍ତିକ ହରିଜନ । ସେ ଜଣେ ଗାଈ ଜଗାଳି । କୁକୁରଟି ତାଙ୍କୁ ଗାଈ ଜଗାରେ ସାହାଯ୍ୟ କରେ ଓ ହଜିଯାଇଥିବା ଗାଈମାନଙ୍କୁ ଖୋଜି ଆଣିଥାଏ । ଏହି କୁକୁରମାନଙ୍କୁ ସଂଗ୍ରହ କରିବାରେ କ୍ରାଇମ ବ୍ରାଞ୍ଚର ଏସ୍: ପି: ଶ୍ରୀଯୁକ୍ତ ଏମ୍. ମୁଖାର୍ଜୀ, ଆଇ. ପି. ଏସ୍. ଜଙ୍ଗଲ ବିଭାଗ ସହିତ ସମ୍ପର୍କ ରଖି ତତ୍ପର ହୋଇ ଉଠିଛନ୍ତି । ଆଶା କରାଯାଏ ଆସନ୍ତା ନଭେମ୍ବର, ଡ଼ିସେମ୍ବର ବେଳକୁ ଆମର ଏଇ ଦେଶୀୟ ନୂତନ ଅତିଥିମାନେ ସହାନି ଶ୍ୱାନ ସଂସ୍ଥାକୁ ଚାଲି ଆସିଥିବେ ।

ଏଇ ବଳିଆ ବୈପାରି, ବଡାଣ, ଫୁଲବାଣୀ ପର୍ଯ୍ୟନ୍ତର କୁକୁରଗୁଡ଼ିକ ଭଲ କାମ କରି ପାରିବେ ବୋଲି ମୁଁ ଦୃଢ଼ ମତପୋଷଣ କରୁଛି । କାରଣ ଜଙ୍ଗଲି କୁକୁରମାନଙ୍କର ପ୍ରକୃତି ହେଲା ଦଳ ଦଳ ହୋଇ ରହିବା । ତା' ଫଳରେ ସେମାନେ ଦଳର ନେତାକୁ ମାନନ୍ତି ।

ସେହି "ମାନିବା" ପ୍ରବୃତ୍ତିକୁ ବ୍ୟବହାର କରି ଅଧିବାସୀମାନେ ତାଙ୍କୁ ବିଭିନ୍ନ କାମରେ ଲଗାଇ ପାରୁଛନ୍ତି । ଏ ବିଷୟରେ John Holmes ବି ତାଙ୍କର "The Obedient dog" ବହିରେ ଲେଖିଛନ୍ତି । It is a strong submissive instinct which makes a dog trainable. An instinct derived from the wild dog's instinct to obey a pack leader and in some cases strengthened by selective breeding over hundred of years".

ସବୁ ବିଦେଶୀ କୁକୁରଙ୍କଠାରେ ଜଙ୍ଗଲି କୁକୁରର ରକ୍ତ ରହିଛି । ଆଜି ଏତିକି—ପରେ ପୁଣି ମିଶା କୁକୁର (Cross breed or hybrid dogs) ବିଷୟରେ କହିବି ।

ପ୍ରଶ୍ନ— "ମୋ କୁକୁରଟିର ବୟସ ୩ । ୪ ମାସ ହେବ, ଘେ ଘରର ସବୁ ଜିନିଷ କାମୁଡ଼ି ନଷ୍ଟ କରିଦେଉଛି। ନିବାରଣର ଉପାୟ କହିପାରିବେ କି ? ତା'ର କୃମି ହୋଇଛି କି ?

ଉ:— "କୃମି ହେବା ଅସମ୍ଭବ ନୁହେଁ । ସେ କଥା ଆପଣ ସକାଳୁ କୁକୁରର ପ୍ରଥମ ଝାଡ଼ାକି ନେଇ ଡାକ୍ତରଙ୍କ ପାଖେ ପରୀକ୍ଷା କରିଲେ ଜାଣି ପାରିବେ । କୁକୁରଛୁଆ ମାନଙ୍କର ପ୍ରବୃତ୍ତିଗତ ପ୍ରକୃତି ହେଲା, କୌଣସି ଗୋଟିଏ ଜିନିଷ ଦେଖିଲେ ତାକୁ ଶୁଙ୍ଘିବା-ତା'ପରେ ଚୁଷିବା, ଟିକେ ଭଲ ଲାଗିଲେ ଖାଇବା ଆରମ୍ଭ କରିଦେବା କିଛି ଆଶ୍ଚର୍ଯ୍ୟଜନକ ବ୍ୟାପାର ନୁହେଁ । ଡ଼: ଜେ: ପି: ସ୍କଟ୍ (Dr. J. P.-scott) କୁକୁର ଓ ମଣିଷଛୁଆର ବ୍ୟବହାର ନେଇ ଗୋଟିଏ ତୁଳନାତ୍ମକ ବିବରଣୀ ଲେଖିଛନ୍ତି । ସେଥିରେ ସେ ଲେଖିଛନ୍ତି ୩ । ୪ ମାସର କୁକୁର ପିଲାଟିର ବ୍ୟବହାର ୭ । ୮ ମାସର ମଣିଷ ପିଲାର ବ୍ୟବହାର ସହିତ ସମାନ, ଏତିକି ବେଳେ ମଣିଷ ପିଲାର ନୂଆ ଦାନ୍ତ ଉଠିବା ଓ କୁକୁର ପିଲାର ସ୍ଥାୟୀ ଦାନ୍ତ ଉଠିବାର ବେଳ, ତେଣୁ ନୂଆ ନୂଆ ଜିନିଷ ଚୁଷିବାରେ ଲାଗିଯାଆନ୍ତି । ବେଳେ ବେଳେ ୨।୩ ମାସ ଆଗରୁ ବା ପଛରୁ ମଧ୍ୟ ଏହି ବ୍ୟବହାର ପରିଲକ୍ଷିତ ହୋଇଥାଏ । ଠିକ୍ ସମୟରେ ବାରଣ ନକଲେ ଆହୁରି ଅଧିକ ବୟସ ହେବାପରେ ମଧ୍ୟ ଏ ପ୍ରକାର ବ୍ୟବହାରର ପରିବର୍ତ୍ତନ ଘଟେ ନାହିଁ ।

ମଣିଷପିଲାକୁ ଆମେ କାଠର ଝୁଣ୍ଟୁନା ଓ ଅନ୍ୟାନ୍ୟ କାଠ ବା ନାଇଲନ୍ ଖେଳନା ଇତ୍ୟାଦି ଦେଉ । ରସ୍କ ବିସ୍କୁଟ୍ ମଧ୍ୟ ଦିଆଯାଏ । ଯାହା ଫଳରେ ଦାନ୍ତର ମୂଳଆଁ ଅଂଶଗୁଡ଼ିକ ଘୋରି ହୋଇଯାଏ । ଠିକ୍ ସେହିଭଳି ସିଝା ମୋଟା ହାଡ଼, ଡଗ୍ ବିସ୍କୁଟ୍, ହାଡଯୋଗ ଯେତିକି ଯେତେ ଦାନ କରି, ବା କୁକୁର ଛୁଆର ଖେଳଣା (ଯଥା-ରବର ବୋନ୍, ଲୁହାର ଫୋରସ୍ ବୋନ୍ ନାଇଲନ୍ କୁକୁର ଖେଳଣା ଇତ୍ୟାଦି ) ଆପଣଙ୍କ କୁକୁର ଛୁଆଟିକୁ କାମୁଡ଼ିବାକୁ ଦିଅନ୍ତୁ । ଏଗୁଡ଼ିକ କଲିକତାର ନିଉମାର୍କେଟରୁ ମିଳିପାରିବ ।

ଏହା ବ୍ୟତୀତ ଗୋଟିଏ ଖବର କାଗଜକୁ ଗୁଡ଼ାଇ ବାଡ଼ିଭଳି କରି ଧରିବେ । କୁକୁରଟିକୁ ଖୋଲି ଦେଇ ଏକାକିଆ ଗୋଟିଏ ଘରେ ଛାଡ଼ି ଦେବେ । ତା' ଚୋବାଇବା ଭଳି, କନା, ଚମଡା ଇତ୍ୟାଦି ପଦାର୍ଥମାନ ପକାଇଦେଇ ଅଳ୍ପଦୂରରେ ଲୁଚି ରହିବେ । କୁକୁରଟି କିଛି କାମୁଡ଼ିବା ଆରମ୍ଭ କଲେ ସଙ୍ଗେ ସଙ୍ଗେ କାଗଜବାଡ଼ିକୁ ଡଳେ ବା କାନ୍ଥରେ, ଟେବୁଲ୍‌ରେ ବାଡ଼େଇ "ନା" ବୋଲି ଚିତ୍କାର କରନ୍ତୁ । କୁକୁର ପିଲାଟି ଶବ୍ଦରେ ଡରି କାମୁଡ଼ିବା ବନ୍ଦ କରିଦେବ । ଏହିଭଳି କିଛିଦିନ କରିବାପରେ କେବଳ "ନା" କହି ବାରଣ କଲେ ବି ସେ ଆଉ କାମୁଡ଼ିବ ନାହିଁ । ଯେଉଁ ଯେଉଁ ଜିନିଷ ଗୁଡ଼ିକ ସେ ନକାମୁଡ଼ିବା ଉଚିତ୍ ଆପଣ ଏହି ଉପାୟରେ ତାକୁ ବାରଣ କରିଦେଇପାରିବେ ।

ମଣିଷ ପିଲା ହେଉ ବା କୁକୁର ପିଲା ହେଉ ସେ ଶବ୍ଦକୁ ଶୀଘ୍ର ଚିହ୍ନିଯିବ । ପରୀକ୍ଷା କରିବାପାଇଁ ମନସ୍ତତ୍ତ୍ୱବିତ୍ ନରମାଲ୍ ଏଲ: ମନ୍; (Normal L. Munn) ଆଲବର୍ଟ୍ (Albert) ନାମକ ଗୋଟିଏ ପିଲାକୁ ଏକାକିଆ ଗୋଟିଏ ଘରେ ଛାଡ଼ିଦେଇ ଧଳାମୂଷା ଟିଏ ଖେଳିବାକୁ ଦେଲେ ।

ସେତେବେଳକୁ ତା'ର ବୟସ ୯ ମାସ ମାତ୍ର । ଜର୍ଭିସ୍ଙ୍କରେ ପିଲାଟି ମୁଣ୍ଡାକୁ ଧରି ଖେଳୁଥାଏ, ଗୋଟାଏ କୁହାକୁ ବାଡ଼େଇ ନି:ମନ୍, ଶବ୍ଦ କଲେ । ପିଲାଟି ଡ଼ରରେ ମୁଣ୍ଡାକୁ ଛାଡ଼ିଦେଲା । ଏହାଭଳି କେତେଥର କଲାପରେ "ଆଲବର୍ଟ" ଆଉ ମୁଣ୍ଡାଧରିଲା ନାହିଁ ।

ଉପରୋକ୍ତ ବର୍ଣ୍ଣନାରୁ ଆପଣ ନିଶ୍ଚୟ ଅନୁମାନ କରିପାରୁଥିବେ ଆପଣଙ୍କର କ୍ରମାଗତ ପ୍ରଚେଷ୍ଟା ଓ ସ୍ନେହ ଆପଣଙ୍କ କୁକୁରକୁ ଠିକ୍ ବାଟକୁ ନେଇ ଆସିବ । ଆଉ ଗୋଟିଏ କଥା. ଆପଣ ସବୁବେଳେ ଆପଣଙ୍କର ବୈଦ୍ୟୁତିକ ସରଞ୍ଜାମ (ବୈଦ୍ୟୁତିକ ତାର ଇତ୍ୟାଦି) କୁକୁରଠାରୁ ଦୂରରେ ରଖିବେ । ନଚେତ୍ ଯଦି ସେ ସବୁ କାମୁଡ଼େ ଆପଣଙ୍କ କୁକୁର ଓ ଆପଣଙ୍କ ପରିବାର ସମସ୍ତେ ବିପଦଗ୍ରସ୍ତ ହୋଇଯିବେ ।

ସ୍ପେଶାଲ ଅଫିସର
ଓଡ଼ିଶା ପୋଲିସ୍ ସନାଗ
ଶ୍ୱାନ ସଂସ୍ଥା, କଟକ



---

## ବାଧ୍ୟତାମୂଳକ ଜମା ଯୋଜନା ପାଇଁ ନୂତନ ସୁଯୋଗ
## ପ୍ରଥମ କିସ୍ତି ଟଙ୍କା ନ ଉଠାଇ ପାଞ୍ଚ ବର୍ଷ ପାଇଁ ଜମା ରଖିଲେ
## ଅଧିକ ହାରରେ ସୁଧ ମିଳିବ

ବାଧ୍ୟତାମୂଳକ ଜମା ଯୋଜନା ଅନୁସାରେ ସଞ୍ଚିତ ହେଉଥିବା କର୍ମଚାରୀମାନଙ୍କର ଅତିରିକ୍ତ ମହଙ୍ଗାଭତ୍ତାର ପ୍ରଥମ କିସ୍ତି ଟଙ୍କା ବର୍ତ୍ତମାନ ନ ଉଠାଇ ଯେଉଁମାନେ ଆଉ ୫ ବର୍ଷ ପାଇଁ ଏହାକୁ ଜମା ରଖିବାକୁ ଇଚ୍ଛା କରିବେ ସେମାନଙ୍କୁ କେନ୍ଦ୍ର ସରକାର ଉପଯୁକ୍ତ ପ୍ରୋତ୍ସାହନ ଦେବାପାଇଁ ନିଷ୍ପତ୍ତି କରିଛନ୍ତି । କର୍ମଚାରୀମାନେ ଜମା ରଖିଥିବା ସମୁଦାୟ ଟଙ୍କାର ଏକ ପଞ୍ଚମାଂଶ ପ୍ରଥମ କିସ୍ତିରେ ଅଗଷ୍ଟ ଓ ସେପ୍ଟେମ୍ବର ମାସ ମଧ୍ୟରେ ଉଠାଇ ନେବାପାଇଁ ବ୍ୟବସ୍ଥା କରାଯାଇଛି । କିନ୍ତୁ ଯେଉଁମାନେ ପ୍ରଥମ କିସ୍ତି ଟଙ୍କା ବର୍ତ୍ତମାନ ନ ଉଠାଇ ଉକ୍ତ ଯୋଜନାରେ ୧୯୮୧ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ଜମା ରଖିବାକୁ ଇଚ୍ଛା କରିବେ, ସେମାନଙ୍କୁ ଏଥିପାଇଁ ଶତକଡ଼ା ୧୨ ୧/୨ ହାରରେ ସୁଧ ମିଳିବ । ପ୍ରଥମ କିସ୍ତିର ଟଙ୍କା କୌଣସି ବ୍ୟାଙ୍କରେ ଜମା ରଖିଲେ ମଧ୍ୟ ଏତେ ଅଧିକ ହାରରେ ସୁଧ ମିଳିବ ନାହିଁ । ଉଦାହରଣ ସ୍ୱରୂପ ଯଦି କୌଣସି କର୍ମଚାରୀଙ୍କର ପ୍ରଥମ କିସ୍ତିରେ ସମୂଳ ସୁଧ ବାବଦକୁ ୬୦୦ ଟଙ୍କା ଫେରସ୍ତ ପାଇବାକୁ ଥାଏ ଏବଂ ସେହି ଟଙ୍କାକୁ ସେ ନ ଉଠାଇ ୫ ବର୍ଷ ଯାଏ ଜମା ରଖି ୧୯୮୧ ମସିହା ଜୁଲାଇ ମାସରେ ଉଠାଇବାକୁ ମନସ୍ଥ କରନ୍ତି, ତାହାହେଲେ ସେତେବେଳେ ସେ ସମୁଦାୟ ୯୭୫ ଟଙ୍କା ପାଇବେ । ଏତଦ୍ଦ୍ୱାରା ସେ ନିଜେ ଉପକୃତ ହେବା ସଙ୍ଗେ ସଙ୍ଗେ ଦେଶରେ ଦରଦାମ୍ ସ୍ଥିର ରଖିବା ଏବଂ ମୁଦ୍ରାସ୍ଫୀତିକୁ ସଫଳ ଭାବରେ ରୋକିବା ଦିଗରେ ସାହାଯ୍ୟ କରିପାରିବେ ।

ରାଜ୍ୟ ସରକାର ତଥା ଅନ୍ୟାନ୍ୟ ସଂସ୍ଥାର କର୍ମଚାରୀମାନେ ଏହି ଆକର୍ଷଣୀୟ ଯୋଜନାର ସୁଯୋଗ ନେବାକୁ ବହୁ ସଂଖ୍ୟାରେ ଆଗଭର ହେବାପାଇଁ ଏତଦ୍ଦ୍ୱାରା ଅନୁରୋଧ କରାଯାଉଛି ।

---




# ଋଷି ଜର୍ମାନୀ ଦେଶରୁ ଫେରି

"ମୋର ପିତୃ ଭୂମିକୁ ଫେରି କହୁଛି—ଯାହା ଅଙ୍ଗେ ନିଭେଇଛି ତା' କହୁଛି । ସମାଜବାଦ ଦର୍ଶନ ତାହା କେବଳ ପୋଥି ଭିତରରୁ ଜାଣିଥିଲି । ସମାଜବାଦ ଯୋଉ ଯୋଉ ଦେଶରେ ବହୁ ଆଗରୁ ବାସ୍ତବ ରୂପାୟନ କ୍ଷେତ୍ରରେ ବହୁ ଦୂର ଆଗେଇ ଯାଇଛି—ସେଇ ସେଇ ଦେଶରୁ ଫେରି ମୁଁ ଅଭିଭୂତ ହୋଇଯାଇଛି । ମଣିଷର ସ୍ୱପ୍ନ ଏପରି ସଫଳ ହୋଇପାରେ ? ମଣିଷର ସମ୍ମିଳିତ ଉଦ୍ୟମ ଏତେଦୂର ଫଳପ୍ରସୂ ହୋଇପାରେ—ସେ କଥା ଆଖିରେ ନ ଦେଖିଲେ ବିଶ୍ୱାସ କରି ହେବନାହିଁ ।"

ଏହା ଥିଲା ସେ ଦିନର ଦର୍ପଣଶୀତଳ ସନ୍ଧ୍ୟାରେ ଆମ ରାଜ୍ୟର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ମାଟିର ମଣିଷ, ଲୁହାର ମଣିଷ, ଆଜିର ମଣିଷଆଦିର ମାନବବାଦୀ ସ୍ରଷ୍ଟା ପଦ୍ମଭୂଷଣ ଶ୍ରୀଯୁକ୍ତ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କର ଆବେଗପୂର୍ଣ୍ଣ ବକ୍ତବ୍ୟ । ସେଦିନ ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘ ତରଫରୁ ଆୟୋଜିତ ବନ୍ଧୁମିଳନ ଉତ୍ସବରେ ଶ୍ରୀଯୁକ୍ତ ପାଣିଗ୍ରାହୀ ତାଙ୍କର ବିଦେଶାନୁଭୂତ ବର୍ଣ୍ଣନା ପୂର୍ବ ଜର୍ମାନୀ ଓ ଋଷ ଦେଶ ଭ୍ରମଣକର ପ୍ରସଙ୍ଗରେ ଆସରଟିକୁ ଖୁବ୍ ହୃଦୟଗ୍ରାହୀ କରି ଦେଇଥିଲେ । ସେ ଅଞ୍ଚଳଗୁଡ଼ିକର ଅର୍ଥନୈତିକ ସୁସ୍ଥିତି, ନୈତିକ ଓ ସାମାଜିକ ଗୁଣାବଳୀର ସୁବିକାଶ, ସାହିତ୍ୟିକ ଓ ସାଂସ୍କୃତିକ ପରିବେଶର ସମୁନ୍ନତି, ଓ ମନୁଷ୍ୟ ଜୀବନକୁ ସହଜ, ସହଣୀୟ ଓ ସୁଖ ସମୃଦ୍ଧିପୂର୍ଣ୍ଣ କରିବା ଦିଗରେ ବିଜ୍ଞାନ ଓ ପ୍ରୟୋଗବିଦ୍ୟାର ଅପୂର୍ବ ସାଫଲ୍ୟ ସମ୍ପର୍କରେ ଶ୍ରୀଯୁକ୍ତ ପାଣିଗ୍ରାହୀ ପ୍ରଶ୍ନୋତ୍ତର ଛଳରେ ବହୁ କଥା କହିଥିଲେ ।

ସେ ସବୁ ଦେଶମାନଙ୍କରେ ଲୋକେ କେତେଦୂର ସମାଜ-ସଚେତନ ଓ ମାନବବାଦୀ ତା'ର ବହୁ ଦୃଷ୍ଟାନ୍ତ ସେ ଦେଇଥିଲେ । ବିଶେଷତଃ ଶିଶୁମାନଙ୍କୁ ସେ ଦେଶରେ ଯେପରି ଚମତ୍କାରଭାବେ ବଢ଼ା ଯାଉଛି ଓ ଗଢ଼ାଯାଉଛି—ତା'ର କେତୋଟି ଅଭିଜ୍ଞତା ସେ ବାଢ଼ିଥିଲେ । ସେ କହିଲେ—ସମାଜବାଦୀ ରାଷ୍ଟ୍ରମାନଙ୍କର ପ୍ରତ୍ୟେକ ଅଧିବାସୀ ତା'ର ଜୀବନଯାପନ ପ୍ରଣାଳୀ ଓ ଜୀବନର ଲକ୍ଷ୍ୟ ଉପରେ ଆମଠାରୁ ଖୁବ୍ ଅଧିକ ସଚେତନ ବୋଲି ମନେହେଲା । ସେ ଦେଶମାନଙ୍କରେ ବିଜ୍ଞାନର ପ୍ରସାର ଘଟିଥିଲେ ହେଁ ପ୍ରାକୃତିକ ସୌନ୍ଦର୍ଯ୍ୟ ସଂରକ୍ଷଣ କରିବା ଦିଗରେ ଓ ଉପଭୋଗ କରିବା ଦିଗରେ ସେମାନେ ଆମଠାରୁ ଖୁବ୍ ଅଗ୍ରସର ନିଶ୍ଚୟ । ସାଧାରଣଭାବେ ସେମାନେ ପରସ୍ପର ମଧ୍ୟରେ ଓ ବିଦେଶୀମାନଙ୍କ ସଙ୍ଗେ ରାଜନୈତିକ ମତଭେଦ ସତ୍ତ୍ୱେ ଖୁବ୍ ଆନ୍ତରିକ ବ୍ୟବହାର ଦେଖାଇଥାନ୍ତି । ବିଶେଷତଃ ଭାରତୀୟମାନଙ୍କୁ ସେମାନେ ଉଚ୍ଛ୍ୱସିତଭାବେ ଭଲପାନ୍ତି ଓ ଅଭ୍ୟର୍ଥନା ଦେଖାନ୍ତି ।

ସେ ଦେଶର ବୁଦ୍ଧିଜୀବୀ ଓ ସାହିତ୍ୟିକମାନଙ୍କ ସମ୍ପର୍କରେ ଶ୍ରୀଯୁକ୍ତ ପାଣିଗ୍ରାହୀ ମତ ଦେଲେ ଯେ ସେ ଦେଶରେ ଆମେ ଯେମିତି ଶୁଣିଥିଲୁ ସାହିତ୍ୟିକମାନଙ୍କର ମତ ପ୍ରକାଶର ସ୍ୱାଧୀନତା ନାହିଁ ବୋଲି ସେ କଥା ନିତାନ୍ତ ମିଛ କଥା । ବହୁ ସାହିତ୍ୟିକ ଓ ରାଜନୀତିକ ବ୍ୟକ୍ତିମାନଙ୍କ ସଙ୍ଗେ ମିଶି ସେ ଜାଣିପାରିଲେ ଯେ ଏସବୁ ଦେଶରେ ବୁଦ୍ଧିଜୀବୀ ଓ ସାହିତ୍ୟିକମାନେ ସମାଜ ଓ ଆଦର୍ଶ ପ୍ରତି ଖୁବ୍ ନିଷ୍ଠାପର ଓ ଘନିଷ୍ଠଭାବେ ସଂପୃକ୍ତ । ସେମାନଙ୍କର ସୁସ୍ଥ ମତାମତର ପ୍ରଭାବ ବହୁ ସମୟରେ ସରକାର



ଉପରେ ପଡ଼େ । ଆମେ ଯେପରି ଏଠି ଯଥେଚ୍ଛାଚାରିତାକୁ ସ୍ୱାଧୀନତା ବୋଲି କହୁ ଓ ଯଥେଚ୍ଛ ପ୍ରକାଶକୁ ଏପରିକି ଅସାମାଜିକ ମତାମତର ପ୍ରକାଶକୁ ପ୍ରକାଶ ସ୍ୱାଧୀନତା ବୋଲି କହୁ—ସେମାନେ ସେ କଥା ମାନନ୍ତି ନାହିଁ । ଲୋକଙ୍କ ମନରେ ଅଶ୍ଳୀଳ ରୁଚି, ଅପରାଧର ପ୍ରବୃତ୍ତି ଓ ଅମଙ୍ଗଳ ଭାବଧାରା ସଂକ୍ରମିତ କରିବାକୁ ସେମାନେ ସ୍ୱାଧୀନ ମତ ପ୍ରକାଶ ବୋଲି କହନ୍ତି ନାହିଁ । ମୋଟ ଉପରେ ସେ ଦେଶରେ ସାହିତ୍ୟିକ ଓ ଶିଳ୍ପୀମାନେ କେବେହେଲେ ନୈରାଶ୍ୟବାଦ ଦ୍ୱାରା ଅଭିଭୂତ ନୁହନ୍ତି କି ନୈରାଶ୍ୟବାଦର ପ୍ରଚାରକ ନୁହନ୍ତି ଅଥଚ ଆମ ଦେଶରେ ନୈରାଶ୍ୟବାଦର ପ୍ରଚାରକୁ ଉନ୍ନତ ସାହିତ୍ୟିକ ଭାବଧାରା ବୋଲି ଡିଣ୍ଡିମ ପିଟାଯାଏ ।

ସଂବର୍ଦ୍ଧନା ଉତ୍ସବ ଉପଲକ୍ଷେ ଆୟୋଜିତ ବନ୍ଧୁମିଳନରେ ସ୍ୱାଗତ ଅଭିଭାଷଣ ଦେଇଥିଲେ ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘର ଅନ୍ୟତମ ସଂପାଦକ ଶ୍ରୀ ଲକ୍ଷ୍ମୀନାରାୟଣ ରାୟ ସିଂହ । ଅନ୍ୟମାନଙ୍କ ମଧ୍ୟରେ କବି ଶ୍ରୀ ଅନନ୍ତ ପଟ୍ଟନାୟକ, କଳାବେତ୍ତା ଶ୍ରୀ ରାମକୃଷ୍ଣ ପଣ୍ଡା, ଗାଳ୍ପିକ ମହାପାତ୍ର ନୀଳମଣି ସାହୁ, ଶ୍ରୀ ଅବନୀ କୁମାର ବରାଳ, ଶ୍ରୀ ଗୋକୁଳନାଥ ଚୌଧୁରୀ, ଗାଳ୍ପିକା ଶ୍ରୀମତୀ ବୀଣାପାଣି ମହାନ୍ତି, ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ତରୁଣ କବି ଶ୍ରୀ ଦେବାନନ୍ଦ ସାମନ୍ତରାୟ, ଶ୍ରୀ ବି. ଚନ୍ଦ୍ରଶେଖର ରଥ ପଟ୍ଟନାୟକ ଓ ସାମ୍ବାଦିକମାନଙ୍କ ସମେତ ଅନେକ କେତେକ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥିଲେ ।

## ଚୂଡ଼ାନ୍ତ ଭୋଟର ତାଲିକା ପ୍ରକାଶ ପାଇଲା

୧୯୬୭ ଅଗଷ୍ଟ ମାସରେ ଭୋଟର ତାଲିକା ନିର୍ବାଚନ ରେଜିଷ୍ଟ୍ରେସନ ଅଫିସର (ସବ୍‌ଡିଭିଜନାଲ ଅଫିସର)ଙ୍କ କାର୍ଯ୍ୟାଳୟ ଓ ସମ୍ପୃକ୍ତ ରେଜିଷ୍ଟ୍ରେସନ ଅଫିସରଙ୍କଦ୍ୱାରା ନିରୂପିତ ନିର୍ବାଚନମଣ୍ଡଳୀର ଅନ୍ୟାନ୍ୟ ସ୍ଥାନମାନଙ୍କରେ ଚୂଡ଼ାନ୍ତଭାବେ ପ୍ରକାଶ ପାଇଛି । ଭୋଟର ତାଲିକାର ସମ୍ପୃକ୍ତ ଅଂଶ-ବିଶେଷ ମଧ୍ୟ ତହସିଲଦାର, ବ୍ଲକ ଉନ୍ନୟନ ଅଫିସର, ଗ୍ରାମପଞ୍ଚାୟତ, ମ୍ୟୁନିସିପାଲିଟି ଓ ବିଜ୍ଞାପିତ ଅଞ୍ଚଳ ପରିଷଦ କାର୍ଯ୍ୟାଳୟମାନଙ୍କରେ ପ୍ରକାଶିତ ହେବ । ଭୋଟର ତାଲିକା ପ୍ରକାଶିତ ହେବା ଦିନଠାରୁ ୧ ମାସ ପର୍ଯ୍ୟନ୍ତ ସମ୍ପୃକ୍ତ ରେଜିଷ୍ଟ୍ରେସନ ଅଫିସରଙ୍କ କାର୍ଯ୍ୟାଳୟରେ ତାହା ଜନସାଧାରଣଙ୍କ ଅବଗତି ନିମନ୍ତେ ରଖାଯିବ । ୧୯୬୭ ଜାନୁୟାରୀ ପହିଲା ଦିନ ୨୧ ବର୍ଷ ପୂର୍ଣ୍ଣ ହୋଇଥିବା ପ୍ରତ୍ୟେକ ନାଗରିକ ଜଣେ ଭୋଟର ହେବାପାଇଁ ଯୋଗ୍ୟ ବିବେଚିତ ହେବେ । ତେଣୁ ଏଭଳି ପ୍ରତ୍ୟେକ ନାଗରିକ ସେମାନଙ୍କର ନାମ ଭୋଟର ତାଲିକାରେ ଦରଜ ହୋଇଛି କି ନା, ତାହା ଯାଞ୍ଚ କରିନେବାପାଇଁ ଅନୁରୋଧ କରାଯାଉଛି । ଯଦି ତାଙ୍କ ନାମ ସେଥିରେ ନଥାଏ କିମ୍ବା ଭୁଲକ୍ରମେ ପ୍ରକାଶ ପାଇଥାଏ, ତେବେ ତାଙ୍କର ନାମ ତହିଁରେ ଦରଜ କରାଇବା ଲାଗି ସେମାନେ ସମ୍ପୃକ୍ତ ନିର୍ବାଚନ ରେଜିଷ୍ଟ୍ରେସନ ଅଫିସର (ସବ୍‌ଡିଭିଜନାଲ ଅଫିସର)ଙ୍କୁ ନିର୍ଦ୍ଧାରିତ ୬ କିମ୍ବା ୮ ନମ୍ବର ଫର୍ମରେ ଦୁଇକପି ଆବେଦନପତ୍ର ସହିତ ୧୦ ପଇସାର ଫିସ୍ ଦେଇ ଆବେଦନ କରିପାରିବେ । ଭୋଟର ତାଲିକାରେ ଥିବା ଅନ୍ୟ କୌଣସି ଆପତ୍ତି ଅଭିଯୋଗପାଇଁ ସେହିଭଳି ଭାବେ ୮ ନମ୍ବର ଫର୍ମରେ ଆବେଦନ କରାଯିବ । ଏଥି ନିମନ୍ତେ ଆବଶ୍ୟକ ୬, ୮, ୮ (କ) ଓ ୮ (ଖ) ନମ୍ବର ଫର୍ମ କିଣିବାପାଇଁ ସବ୍‌ଡିଭିଜନାଲ ଅଫିସର, ବ୍ଲକ ଉନ୍ନୟନ ଅଫିସର ଓ ତହସିଲଦାରଙ୍କ କାର୍ଯ୍ୟାଳୟରେ ତାହା ମହଜୁଦ ରଖାଯାଇଛି ।

# ପରିବାର ନିୟୋଜନ କ୍ଷେତ୍ରରେ ଓଡ଼ିଶାର ଅଗ୍ରଗତି

| ବର୍ଷ | ପଦ୍ଧତି | | ଲକ୍ଷ୍ୟ | ସଫଳତା | ଶତକଡ଼ା ହାର |
|---|---|---|---|---|---|
| ୧୯୭୫-୭୬ | ଅସ୍ତ୍ରୋପଚାର | .. | ୧,୦୯,୨୦୦ | ୧,୨୪,୦୪୮ | ୧୧୪ |
| | ଲୁପ୍ | .. | ୩୨,୩୦୦ | ୨୩,୮୪୩ | ୭୪ |
| | ଅନ୍ୟାନ୍ୟ ଗର୍ଭ ନିରୋଧକ ପଦ୍ଧତି । | | ୪୯,୮୦୦ | ୪୨,୪୦୩ | ୮୫ |

* * * * *

| ବର୍ଷ | ପଦ୍ଧତି | | ଲକ୍ଷ୍ୟ | ସଫଳତା | ଶତକଡ଼ା ହାର |
|---|---|---|---|---|---|
| ୧୯୭୬-୭୭ (ଜୁଲାଇ ଶେଷସୁଦ୍ଧା) | ଅସ୍ତ୍ରୋପଚାର | .. | ୧,୯୫,୫୦୦ | ୫୨,୪୪୫ | ୨୭ |
| | ଲୁପ୍ | .. | ୩୨,୫୦୦ | ୫,୭୯୮ | ୧୮ |
| | ଅନ୍ୟାନ୍ୟ ଗର୍ଭ ନିରୋଧକ ପଦ୍ଧତି । | | ୪୧,୧୦୦ | ୧୫,୩୬୪ | ୩୭ |

( କେବଳ ଜୁଲାଇ ମାସରେ ୨୯,୦୦୦ ଅସ୍ତ୍ରୋପଚାର ହୋଇଛି । )

* * * * *

ପଦ୍ଧତି ପ୍ରଚଳନ ଆରମ୍ଭରୁ ଜୁଲାଇ ୧୯୭୬ ଶେଷସୁଦ୍ଧା .. ଅସ୍ତ୍ରୋପଚାର .. ୯,୮୮,୯୪

ଲୁପ୍ .. ୩,୬୦,୮୯

ରାଜ୍ୟ ପରିବାର ନିୟୋଜନ ସଂସ୍ଥା
ଭୁବନେଶ୍ୱର

## ଏକ ପରିକ୍ରମା

# ରାଜ୍ୟ ସ୍ତରୀୟ ଲୋକନୃତ୍ୟ-ସଂଗୀତ ସମ୍ମେଳନ

ଶ୍ରୀ ପ୍ରଫୁଲ୍ଲ ନାୟକ

ଗତ ମଇ ମାସ ୨୨, ୨୩ ଏବଂ ୨୪ ତାରିଖ ତିନି ଦିନ ବ୍ୟାପି ଏକ ମନୋଜ୍ଞ ମନମୁଗ୍ଧକର ସାଂସ୍କୃତିକ ପରିବେଶ ଭିତରେ, ମହାବୀର ସାଂସ୍କୃତିକ ଅନୁଷ୍ଠାନର ସଙ୍ଗୀତ ବିଭାଗ ସ୍ୱରଗ୍ରା ସଙ୍ଗୀତ ନାଟକ ଅନୁଷ୍ଠାନର ଏକାନ୍ତ ଆନୁକୂଲ୍ୟରେ, ରାଜ୍ୟସ୍ତରୀୟ ଲୋକ ନୃତ୍ୟ ସଙ୍ଗୀତ ସମ୍ମେଳନ ଏକ ମନୋହର ମୁକ୍ତ ମଞ୍ଚ ତଳେ ଭବାନୀପାଟଣା ବ୍ରଜମୋହନ ଉଚ୍ଚ ବିଦ୍ୟାଳୟ ପ୍ରାଙ୍ଗଣରେ ମହାସମାରୋହରେ ଅନୁଷ୍ଠିତ ହୋଇଗଲା । ଏଭଳି ଏକ ସମ୍ମେଳନ ବହୁ ପ୍ରକାର ବ୍ୟସ୍ତତା ଭିତରେ



ସାଧାରଣ ମନୋରଞ୍ଜନ ବ୍ୟବସ୍ଥା ଅପେକ୍ଷା ବହୁ ଉଚ୍ଚତର ପର୍ଯ୍ୟାୟର ହୋଇ ଥିବାରୁ ଉଦ୍ୟୋକ୍ତାମାନେ ଧନ୍ୟ ଅଭିନନ୍ଦନୀୟ । ଲୋକ ନୃତ୍ୟ ସଙ୍ଗୀତକୁ ସଞ୍ଜୀବିତ କରି ଅତୀତ ପରମ୍ପରା ତଥା ମୌଳିକତା ରକ୍ଷା ଦିଗରେ ଓଡ଼ିଶାରେ ଏଭଳି ଆୟୋଜନର ଯଥେଷ୍ଟ ପ୍ରୟୋଜନ ଥିଲା । ଆଧୁନିକ ନୃତ୍ୟ

ସଙ୍ଗୀତ, ନାଟକ ପରିବେଷଣର ଶୈଳୀ, ସିନେମା ତଥା ଟେଲିଭିଜନ୍ କାର୍ଯ୍ୟକ୍ରମର ଯୁଗାନ୍ତକାରୀ ପ୍ରଭାବ ଲୋକ ନୃତ୍ୟ ସଙ୍ଗୀତର ମୌଳିକତାକୁ ଯେ କିଭଳି ଭାବେ ନଷ୍ଟ କରିବ ଏପରି ଆଶଙ୍କା ସ୍ୱାଭାବିକ । ଯଦି ଲୋକ ନୃତ୍ୟ-ସଙ୍ଗୀତକୁ ମୂଳରୁ ରକ୍ଷା କରାନଯାଏ ତାହାହେଲେ ଲୋପ ପାଇଯିବ ।

ତା ୨୨ ରିଖ ସନ୍ଧ୍ୟାରେ ଯଥାରୀତିରେ ସମ୍ମେଳନ ଉଦଘାଟନ କରି ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଶ୍ରୀ ଭୁବନେଶ୍ୱର ବେହେରା ଓଡ଼ିଶାରେ ଲୋକନୃତ୍ୟ-ସଙ୍ଗୀତକୁ ବଞ୍ଚାଇ ରଖିବାପାଇଁ ଏପରି ଆୟୋଜନକୁ ସ୍ୱାଗତ କରିଥିଲେ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସ୍ପେଶାଲ୍ ଅଫିସର ଶ୍ରୀ ଧୀରେନ୍ ଦାସ ତାଙ୍କର ଭାଷଣ ପ୍ରସଙ୍ଗରେ ଓଡ଼ିଶା ଲୋକ ନୃତ୍ୟ ସଙ୍ଗୀତର ସଂରକ୍ଷଣ ସ୍ୱତ ଆଲୋଚନା କରିଥିଲେ ।

ତିନଦିନଧରି ପ୍ରତ୍ୟେକ ସନ୍ଧ୍ୟାରେ ନୃତ୍ୟ-ଗୀତ ପରିବେଷଣ କରାଯାଉଥିଲା ଏବଂ ପୂର୍ବାହ୍ଣରେ ବିଭିନ୍ନ ଦିଗରୁ ତାତ୍ତ୍ୱିକ ଆଲୋଚନା ହେଉଥିଲା ।



କୋରାପୁଟର ଧାଙ୍ଗଡ଼ା ନୃତ୍ୟ

ଉଦଯାପନ ସନ୍ଧ୍ୟାରେ ଆଦିବାସୀ ଗ୍ରାମ ମଙ୍ଗଳ ମନ୍ତ୍ରୀ ଶ୍ରୀଯୁକ୍ତ ରାମଚନ୍ଦ୍ର ଉଲକା ମୁଖ୍ୟ ଅତିଥି ଭାବରେ କଳାକାରମାନଙ୍କୁ ପ୍ରମାଣପତ୍ର ପ୍ରଦାନ କରିଥିଲେ । ପ୍ରଫେସର ବେହେରା ସମ୍ମେଳନ ଉଦ୍ଦେଶ୍ୟରେ ପ୍ରକାଶିତ ସ୍ମରଣିକା ଉଦ୍‌ଘାଟନ କରିଥିଲେ, ଅଧ୍ୟକ୍ଷତା କରିଥିଲେ କଳାହାଣ୍ଡି ଜିଲ୍ଲାପାଳ ଶ୍ରୀ ପ୍ରତାପ କୁମାର ମହାନ୍ତି ସଭାପତିତ୍ୱ କରିଥିଲେ ଭବାନୀପାଟଣା ନଗରପାଳ ଶ୍ରୀ ରାସ ବିହାରୀ ବେହେରା ଏବଂ ତାଙ୍କରି ପ୍ରସଙ୍ଗରେ କେତେଗୁଡ଼ିଏ ଲୋକ ସଙ୍ଗୀତର ଉପଲକ୍ଷ୍ୟ ଦେଇଥିଲେ ଶ୍ରୀ ନିର୍ମଳ କୁମାର ମହାପାତ୍ର ।

ସେମିନାରରେ ଯୋଗଦେଇ ଶ୍ରୀ ଧୀରେନ ଦାସ, ଶ୍ରୀ ନିର୍ମଳ କୁମାର ମହାପାତ୍ର, ଶ୍ରୀ ରାସ ବିହାରୀ ବେହେରା, ଶ୍ରୀ ଶୁଭେନ୍ଦୁ ମୁଣ୍ଡ, ଶ୍ରୀ ସଦାଶିବ ମିଶ୍ର, ପଣ୍ଡିତ ଶ୍ରୀ ଲକ୍ଷ୍ମୀରାମ ଚମ୍ପତି, ଶ୍ରୀ ଭଗବାନ ସାହୁ, ଶ୍ରୀ ପିତର ନାଏକ, ଶ୍ରୀ ପ୍ରଫୁଲ୍ଲ ନାଏକ, ଶ୍ରୀ ପ୍ରଫୁଲ୍ଲ ରଥ, ଶ୍ରୀ ଜନ୍ମେଜୟ ପାଢ଼ୀ, କୁମାର ସାହେବ ଶ୍ରୀ ଯୋଗେଶ ଚନ୍ଦ୍ର ସିଂହଦେଓ ଦଣ୍ଡନୃତ୍ୟ, ଚଢ଼େୟା ନୃତ୍ୟ, ତାଣ୍ଡବନୃତ୍ୟ, ଘୁମୁରାନୃତ୍ୟ, ଛଉନୃତ୍ୟ, ଆଦିବାସୀ ନୃତ୍ୟ, ଯାତ୍ରା, ସୁଆଙ୍ଗ ଏବଂ ଲୋକଗୀତ ଉପରେ ବିଭିନ୍ନ ଦିଗରୁ ଆଲୋଚନା କରିଥିଲେ ।

ଏସବୁ ବ୍ୟବସ୍ଥାପନା ରୂପରେଖକୁ ବାଦଦେଲେ, ଯେଉଁ ଲୋକନୃତ୍ୟ, ଲୋକଗୀତ ତଥା ଲୋକ ସଙ୍ଗୀତ ଦଳ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସମ୍ମେଳନକୁ ପ୍ରାଣ ଦେବାକୁ ଆସିଥିଲେ ସେହିମାନେ ଥିଲେ ସମସ୍ତଙ୍କର ବିଶେଷ ଆକର୍ଷଣ । ସେହିମାନଙ୍କ କଳାର ଦର୍ଶକ ସ୍ଥାନରେ ହଜାର ହଜାର ସଂଖ୍ୟାରେ ଓ ପ୍ରତ୍ୟେକ ସନ୍ଧ୍ୟାରେ ମଞ୍ଚ ନିକଟରେ ଜନସମାବେଶ ହେଉଥିଲା । ହଜାର ହଜାର ଦର୍ଶକ ସେଥିରେ ବିକଳ୍ପ ସ୍ଥିତି ପର୍ଯ୍ୟନ୍ତ ମନ୍ତ୍ରମୁଗ୍ଧପରି ବସିରହୁଥିଲେ, ସେମାନଙ୍କ କଳା ପରିବେଷଣରେ ଆକର୍ଷଣ ଥିଲା ବୋଲି ନିଃସନ୍ଦେହ କହିବାକୁ ହେବ । ଅନେକ ଗୁଡ଼ିଏ କାର୍ଯ୍ୟକ୍ରମ ଲୋକନୃତ୍ୟ ପର୍ଯ୍ୟାୟଭୁକ୍ତ ନହେଲେ ମଧ୍ୟ ମନୋରଞ୍ଜନପାଇଁ ପରିବେଷଣ କରାଯାଇଥିଲା । ଯେଉଁ କେତୋଟି ଲୋକନୃତ୍ୟ-ସଙ୍ଗୀତ ଦଳ ଯୋଗ ଦେଇଥିଲେ ସେମାନେ ହୃଦୟସ୍ପର୍ଶୀ କଳା ପରିବେଷଣ କରିଥିଲେ ।

ବଲାଙ୍ଗୀର କଳାକାରମାନେ ଯୋଡ଼ି ଚଢ଼େଇ ଓ ଦଣ୍ଡ ନୃତ୍ୟ ପରିବେଷଣ କରିଥିଲେ ତାହାର ଚଇତ ଘୋଡ଼ା ନାଚ ସହିତ ସାମଞ୍ଜସ୍ୟ ଥିଲା । ଚୈତ୍ର ମାସରେ କୈବର୍ତ୍ତମାନେ ଏହି ଧରଣର ନୃତ୍ୟ ପରିବେଷଣ କରିଥାନ୍ତି । ଏହାକୁ ସ୍ଥାନ ବିଶେଷରେ ଚଡ଼ିଆ ସମ୍ବଲାଣୀ ନାଚବୋଲି କୁହାଯାଏ । ଚିତ୍ତରଞ୍ଜନ ସାହାଣୀ ଏବଂ ସାଳିଗ୍ରାମ ମିଶ୍ରଙ୍କ ତତ୍ତ୍ୱାବଧାନରେ ଏହି ନୃତ୍ୟ ପରିବେଷଣ କରାଯାଇଥିଲା । ପ୍ରାଚୀନ ମୌଳିକତା ସମ୍ପୂର୍ଣ୍ଣ ରକ୍ଷାକରାଯାଇ ନ ଥିଲେ ମଧ୍ୟ ଉପସ୍ଥାପନା ଖୁବ୍ ଚିତ୍ତାକର୍ଷକ ହୋଇଥିଲା ।



କଳାହାଣ୍ଡିର ଘୁମୁରା ନୃତ୍ୟ

ଢେଙ୍କାନାଳ ଜିଲ୍ଲା କଣ୍ଟାପାଳର ଗୋପାଳମାନେ ଗୋପାଳଙ୍କ ଓଗାଳ ନୃତ୍ୟ ପରିବେଷଣ କରିଥିଲେ । ଉପକୂଳ ଜିଲ୍ଲା ଗୋପାଳମାନଙ୍କ ଲଉଡ଼ୀ ଖେଳର ଏହା ସମଧର୍ମୀ, ବୋଧହୁଏ ଏକ-ଶ୍ରେଣୀୟ । ଦୋଳପୂର୍ଣ୍ଣିମୀରୁ ଗୋପାଳମାନେ ଶିଙ୍ଗା ବଜାଇ ଅଣ୍ଟାରେ ଘାଗୁଡ଼ିବାନ୍ଧି ବାଡ଼ିଧରି ଗୀତ ବୋଲି ଏହି ପ୍ରକାର ନୃତ୍ୟରେ ନିମଜ୍ଜିତ ହୁଅନ୍ତି ।

କଳାହାଣ୍ଡିର ଘୁମୁରା ଏକ ପାରମ୍ପରିକ ଲୋକନୃତ୍ୟ । ମୁଣ୍ଡରେ ପାଗବାନ୍ଧି, ମୟୂରପୁଚ୍ଛ ଖୋସି କୋଳରେ ଘୁଙ୍ଗୁର ବାନ୍ଧି ଦଶଜଣ ପୁରୁଷ ଏକଠି ଘୁମୁରା ବଜାଇ ବିଭିନ୍ନ ତାଳରେ ନୃତ୍ୟ ପରିବେଷଣ କରନ୍ତି । ଜଣେ ଗୀତ ବୋଲୁଥାଏ ଏବଂ ଗୋଟିଏ ପଦ ଗୀତ ଶେଷହେଲେ

ସମସ୍ତେ ଘୁମୁରା ବଜାଇ ନାଚି ଥାଆନ୍ତି । ଗଣରାଜ୍ୟ ପାଳନ ଉତ୍ସବରେ କଳାହାଣ୍ଡିର ଘୁମୁରା ନୃତ୍ୟ ବହୁବାର ଦିଲ୍ଲୀରେ ପ୍ରଦର୍ଶିତ ହୋଇ ଆସିଛି । ଭାରତୀ ଅନୁଷ୍ଠାନର କଳାକାରମାନେ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ଉପରେ ଆଧାରିତ ସଙ୍ଗୀତ ଗାନକରି ଏହି ପ୍ରକାର ଘୁମୁରାନୃତ୍ୟ ପରିବେଷଣ କରିଥିଲେ । ପ୍ରାଚୀନ ମୌଳିକତା ରକ୍ଷା ଦିଗରେ ସେମାନେ ଯଥେଷ୍ଟ ସଚେତନ ଥିଲେ ।

ଧୁଆଁମୂଳ-ରାମପୁରର ଗଜଦଳମାନେ ଶୀଗ୍ରବାଦ୍ୟ ପରିବେଷଣ କରିଥିଲେ । ପୁଷପୁନମାରୁ ଧରଣୀ ପୂଜା ଉଦ୍ଦେଶ୍ୟରେ ପଶୁବଳୀ ଦେଇ ପୁରୁଷମାନେ ନିଶାଣ, ଢୋଲ, ମହୁରି, ସିଙ୍ଗା ଇତ୍ୟାଦି ବଜାଇ ଏହି ପ୍ରକାର ନୃତ୍ୟର ଅବତାରଣା କରନ୍ତି ।

ସମ୍ବଲପୁର କୁମ୍ଭାରୀ ଗ୍ରାମର କଳାକାରମାନେ ଶିବ ତାଣ୍ଡବ ନୃତ୍ୟ ପରିବେଷଣ କରିଥିଲେ । କୁମ୍ଭାରୀ ଗ୍ରାମର ଏହା ଗ୍ରାମିଣ ସ୍ୱତନ୍ତ୍ରତା ବୋଲି କୁହାଯାଇଥିଲା ।



ଫୁଲବାଣୀ ଜିଲ୍ଲା କନ୍ଧମାନଙ୍କ ବିବାହ ନୃତ୍ୟ
ନୃତ୍ୟର ଛନ୍ଦ ସରଳ ଏବଂ ସହଜ ହେଲେ ମଧ୍ୟ ଉପଭୋଗ୍ୟ

କୋରାପୁଟର ଧାଙ୍ଗଡ଼ା ଧାଙ୍ଗଡ଼ୀ ନୃତ୍ୟ ଅନ୍ୟ ଏକ ବିଶେଷ ଆକର୍ଷଣ ଥିଲା । ଗାୟକ ବେଜ୍ୟା ଏବଂ ତାଙ୍କର ସାଥୀ ତୁଇଲ ଜାନି ତେର ଜଣ ଧାଙ୍ଗଡ଼ୀ ଏବଂ ନଅ ଜଣ ଧାଙ୍ଗଡ଼ୀଙ୍କୁ ନେଇ ନୃତ୍ୟ ଉପସ୍ଥାପନା କରିଥିଲେ । ବିଭିନ୍ନ ପର୍ବ ପର୍ବାଣୀ ଏବଂ ଫସଲ ଅମଳ ସମୟରେ ମନରେ ଯେଉଁ ଆବେଗ ଏବଂ ଉଦ୍ଦୀପନା ଦେଖାଦିଏ ସେହି ଆବେଗମୟ ଆଦିବାସୀ ଭାଷାରେ ଗୀତ ବୋଲି ସେମାନେ ନୃତ୍ୟ କରନ୍ତି । ମାଦଳ, ଡୁରୁଡୁଙ୍ଗ, ଡୁଙ୍ଗଡୁଙ୍ଗୀ ଏବଂ କରତାଳ ବାଦ୍ୟରୂପେ ବ୍ୟବହୃତ ହୁଏ । ଧାଙ୍ଗଡ଼ୀମାନେ କଟୀରେ କଟୀ, କାନ୍ଧରେ କାନ୍ଧ ମିଶାଇ ହାତ ଛନ୍ଦାଛନ୍ଦି ହୋଇ ମଞ୍ଚ ଉପରେ ନୃତ୍ୟ ପରିବେଷଣ କରୁଥିଲେ । ଏହି

ଫୁଲବାଣୀ ଜିଲ୍ଲା ନୂଆଗାଁ ବ୍ଲକର ଆଦିବାସୀମାନେ ଦଳପତି ପିତର ନାୟକଙ୍କ ଅଧିନାୟକତ୍ୱରେ କେତେଗୁଡ଼ିଏ ଆଦିବାସୀ ନୃତ୍ୟ ପରିବେଷଣ କରିଥିଲେ । ସେଗୁଡ଼ିକ ଥିଲା ସବୁଠାରୁ ଉତ୍କୃଷ୍ଟ ଧରଣର ଲୋକ ନୃତ୍ୟ । ସେମାନଙ୍କର କେଉଁ ଧାଙ୍ଗଡ଼ା ଧାଙ୍ଗୁଡ଼ୀ ଏବଂ ବିବାହ ନୃତ୍ୟ ପ୍ରତ୍ୟେକଟିରେ ମୌଳିକ ପରମ୍ପରା ଥିଲା ଏବଂ ସେମାନଙ୍କର ପ୍ରତ୍ୟେକଟି ନୃତ୍ୟର ଉପସ୍ଥାପନା ଉପଭୋଗ୍ୟ ହୋଇଥିଲା । ପୌଷ ମାଘ ଫାଲଗୁନ ଏବଂ ଚୈତ୍ର ମାସରେ ଆଦିବାସୀମାନେ ଦେବ ଦେବୀ ପୂଜା ଦେଇଥାନ୍ତି । ଏହି ପୂଜାବେଳେ ଗୁଙ୍ଗୁ, ମହୁରୀ ଏବଂ ଢେଙ୍କୁ ବାଦ୍ୟ ବଜାଇ ନୃତ୍ୟକାରୀ ଦଳ ପାଞ୍ଚିରୁଣ୍ଡି କରି ନାଚନ୍ତି । ସାଧାରଣତଃ ଏହି ପ୍ରକାର ନୃତ୍ୟରେ ମଦିରା ପାନରେ ଭୋଳ ହୋଇ ଶହେରୁ ଦେଢ଼ଶହ ପର୍ଯ୍ୟନ୍ତ ନୃତ୍ୟକାରୀ ଭାଗ ନିଅନ୍ତି । ସେମାନେ ଦିନସାରା ଉପବାସ ରହିଥାନ୍ତି । ମଞ୍ଚ ଉପରେ ଯେଉଁ ଅଠର ଜଣ ନୃତ୍ୟକାରୀ ନୃତ୍ୟ ପରିବେଷଣ

କରିଥିଲେ ସେମାନେ ଅଧିକ ସମୟ ଲଗାଇଥିଲେ କିନ୍ତୁ ସମୟର ଅନୁରୂପ ଅଭିନୟ ଅତି ଚମତ୍କାର ଭାବରେ କରିଥିଲେ । ଧାଙ୍ଗଡ଼ା ଧାଙ୍ଗଡ଼ୀ ନୃତ୍ୟରେ ସେମାନଙ୍କର ମଧୁର ତାଳ ସହିତ ମଧୁର ନୃତ୍ୟ କୌଶଳ ଉପଭୋଗ୍ୟ ହୋଇଥିଲା । ବରକୁ ଏବଂ କନ୍ୟାକୁ କାନ୍ଧରେ ବସାଇ ଶୋଭାଯାତ୍ରାର ଅନୁରୂପ ଅଭିନୟ କରି ସେମାନେ ନୃତ୍ୟରତ ଥିଲେ । ଅଭିନୟ କରିବାର କଳାକୁ ସେମାନେ ହୃଦୟଙ୍ଗମ କରିପାରିଛନ୍ତି ବୋଲି ଅନେକଙ୍କର ବୁଝିହେଲା ।

ଭବାନୀପାଟଣା ସ୍ୱରଚିତ ଅନୁଷ୍ଠାନର ଆନୁକୂଲ୍ୟରେ କେତେଗୁଡ଼ିଏ ଶ୍ରୁତି ମଧୁର ସମ୍ବଲପୁରୀ ଏବଂ ଲରିଆ ଲୋକଗୀତ ପରିବେଷଣ କରାଯାଇଥିଲା । ଜୁନାଗଡ଼ର ଆଦିବାସୀ ସ୍ତ୍ରୀମାନେ ବୋଲଥା ଲୋକଗୀତ ଗାନ କରିଥିଲେ । କାନ୍ତ କୋଇଲି ଏବଂ କେଶବ ଝୋରବ ପରି ଆଦିବାସୀ ଭାଷାରେ କଳାହାଣ୍ଡିର କେତେକ ଅଞ୍ଚଳରେ ଏହି 'ବୋଲଥା' ଲୋକଗୀତର ପ୍ରଚଳନ ଅଛି । ଏହା ବ୍ୟତୀତ ଦର୍ଶକମାନଙ୍କ ମନୋରଞ୍ଜନପାଇଁ ଓଡ଼ିଶାର ସଜନାତ୍ମକ ପାରମ୍ପରିକ ଗୀତନାଟ୍ୟ ବିଭିନ୍ନ ନାଟ୍ୟ ସଂସ୍ଥା ତରଫରୁ ପରିବେଷଣ କରାଯାଇଥିଲା । ଭୁବନେଶ୍ୱର ଉତ୍କଳ ଯାତ୍ରା ମଣ୍ଡଳୀଦ୍ୱାରା କାର୍ତ୍ତିବୀର୍ଯ୍ୟ



ଢେଙ୍କାନାଳ ଗୋପାଳଙ୍କ ଓଁଚାଳ ନୃତ୍ୟ

ସଂହାର । ଭବାନୀପାଟଣା ରାଜସ୍ଥିତ ନାଟ୍ୟସଂସ୍ଥାଦ୍ୱାରା ଲକ୍ଷାବତୀ ସୁଅଙ୍ଗ, ବୋଲଗମଲ ନାଟ୍ୟ ସଂସ୍ଥାଦ୍ୱାରା ଚନ୍ଦ୍ରକଳା ହରଣ ଏବଂ ଭେଡେଲପଡା ନାଟ୍ୟ ସଂସ୍ଥାଦ୍ୱାରା ପ୍ରମିଳାର୍ଜୁନ ସୁଅଙ୍ଗ ଅଭିନୟ କରାଯାଇଥିଲା । ଉତ୍କଳ ଯାତ୍ରାମଣ୍ଡଳୀର କାର୍ତ୍ତିବୀର୍ଯ୍ୟ ସଂହାର ଗୀତନାଟ୍ୟରେ ସଙ୍ଗୀତ ନାଟକ ଏକାଡେମୀର ସ୍ପେଶାଲ୍ ଅଫିସର ଧୀରେନ ଦାସ ଯେ ଅଭିନୟ କରିଥିଲେ ଏବଂ ଅନ୍ୟ ଅଭିନେତା ଏବଂ ଅଭିନେତ୍ରୀମାନେ ପ୍ରାପ୍ତ ଥିଲେ ଜଗତବୋଧିଦାସଙ୍କ ପରିବାର କର୍ମସ୍ତମ୍ଭ ।

ଆକାଶବାଣୀ ଏବଂ ଟେଲିଭିଜନ ସଂସ୍ଥା ପକ୍ଷରୁ କାର୍ଯ୍ୟକ୍ରମମାନଙ୍କର ବିବରଣୀ ଏବଂ ଫଟୋଚିତ୍ର ଗ୍ରହଣ କରାଯାଇଥିଲା । ଅନ୍ତୁଣ ଅନେକ ପ୍ରକାର ଲୋକନୃତ୍ୟ ଏବଂ ଲୋକଗୀତର ପ୍ରଦର୍ଶନ ସମ୍ମେଳନରେ ହୋଇପାରିଲା ନାହିଁ । ଘୁଡୁକା, ଚଢ଼େୟା, ପାଠୁଆ, ସୁଆ, ଭୂଆଁ ରସରକେଳିଗୀତ, ରଜଦୋଳିଗୀତ ଇତ୍ୟାଦି ପଶ୍ଚିମ ଅଞ୍ଚଳର ନୃତ୍ୟଗୀତକୁ ପ୍ରଦର୍ଶନ କରିବାପାଇଁ କୌଣସି କଳାକାର ଯୋଗ ଦେଇ ନଥିଲେ ।

ଓଡ଼ିଶାର ପ୍ରାଚୀନ ଲୋକନୃତ୍ୟ ଏବଂ ଲୋକଗୀତକୁ ଅଜ୍ଞାତ ଭାବରେ ହେଲେ ହେଲ କେବଳ ମୃତ ଭାବରେ ବାନ୍ଧିରଖିବାପାଇଁ ଏଭଳି ସମ୍ମେଳନ ଉଦ୍ଦିଷ୍ଟ ନୁହେଁ । ପ୍ରତ୍ୟେକ ନୃତ୍ୟଗୀତ ଉପରେ ତାତ୍ତ୍ୱିକ ଆଲୋଚନାକରି ମୌଳିକତା ରକ୍ଷାକରି ବଞ୍ଚେଇ ରଖିବା ଦାୟିତ୍ୱ କିଏ ବହନ କରିବ ସେ କଥ ଏହି ପ୍ରକାର ସମ୍ମେଳନରେ ଲୋକ-ନୃତ୍ୟ-ଗୀତ ବିଶାରଦମାନେ ଚିନ୍ତା କରିବା ଉଚିତ ।

ଭବାନୀପାଟଣା, କଳାହାଣ୍ଡି



ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାଶ ମହାପାତ୍ର ୧୯୭୭ ନଭେମ୍ବର ୮ରେ ଆସିକା ବିଜ୍ଞାନ କଲେଜର ନବନିର୍ମିତ ଭବନ ଉଦ୍‌ଘାଟନ କରୁଛନ୍ତି । ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୋମନାଥ ରଥ ଏ ଉତ୍ସବରେ ଉପସ୍ଥିତ ଅଛନ୍ତି ।

# ନିରପେକ୍ଷ ରାଷ୍ଟ୍ର
# ଶିଖର ସମ୍ମିଳନୀ
# କାହା ପାଇଁ ?



ଶ୍ରୀ ଡ. ଚନ୍ଦ୍ରଶେଖର ରାଓ ପଟ୍ଟନାୟକ

ଦ୍ୱିତୀୟ ବିଶ୍ୱ ମହାସମର ପରେ ଚାରୋଟି ଦଶନ୍ଧି କାଳ ମଧ୍ୟରେ ପୃଥିବୀର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ବୈଜ୍ଞାନିକ ମାନଚିତ୍ରରେ ଅଭୂତପୂର୍ବ ପରିବର୍ତ୍ତନ ମାନ ସଂଘଟିତ ହୋଇ ଯାଇଛି । ସଂଖ୍ୟାଧିକ ରାଷ୍ଟ୍ର ଶୋଷିତର ଅଭିଶାପରୁ ମୁକ୍ତ ହୋଇ ସ୍ୱାଧୀନତାର ଅପୂର୍ବ ସ୍ୱାଦ ଉପଲବ୍ଧି କରି ପାରିଛନ୍ତି । ଅନ୍ୟ କଥାରେ କହିଲେ, ସାମ୍ରାଜ୍ୟବାଦୀ ଓ ଉପନିବେଶବାଦୀ ଶୃଙ୍ଖଳାରୁ ମୁକ୍ତ ହୋଇ ସଦ୍ୟ ସ୍ୱାଧୀନ ରାଷ୍ଟ୍ରମାନେ ସ୍ୱାଧୀନ ଅର୍ଥନୀତି ଗଠନପାଇଁ ପ୍ରୟାସକୁ ସାକାର କରିବାଲାଗି

ସାହସିକ ଦର୍ପରେ ଆଗେଇ ଚାଲିଛନ୍ତି ସଂଗ୍ରାମପଥରେ । ଏଥିରେ ସଂଗ୍ରାମ ଚାଲୁରହିଛି ବିଶ୍ୱ ମାନଚିତ୍ରରୁ ସାମ୍ରାଜ୍ୟବାଦ ଓ ଉପନିବେଶବାଦର ଚିହ୍ନାବଶେଷକୁ ସବୁଦିନ ପାଇଁ ଲିଭାଇ ଦେବାକୁ, ଇତିହାସର ଅବଧାରିତ ଗତିକୁ ରୋକିବା ପାଇଁ ହେଉଥିବା ଅପପ୍ରୟାସକୁ ଉଚିତ ଜବାବ ଦେବାପାଇଁ ।

ଏହା କେବଳ କଥାର କଥା ନୁହେଁ, ବିଶ୍ୱ ପରିପ୍ରେକ୍ଷୀରେ ସାମ୍ରାଜ୍ୟବାଦର ଧ୍ୱଂସୋନ୍ମୁଖ ପରିପ୍ରକାଶ ପୁଞ୍ଜିବାଦୀ ଜଗତରେ ଦେଖାଦେଇଥିବା ସଂକଟ ସଦ୍ୟ ସ୍ୱାଧୀନ ରାଷ୍ଟ୍ରମାନଙ୍କ ମଧ୍ୟରେ ନୂତନ ଯୁଗର ସମାଜବାଦ ବାର୍ତ୍ତା ପହଞ୍ଚାଇ ଦେଇଛି. ଐକ୍ୟ ଓ ସଂହତି ମାଧ୍ୟମଦେଇ । ସମଗ୍ର ପୃଥିବୀର ଚୌହଦି ବା କୌଣସି ପ୍ରାନ୍ତରେ ଉତ୍ତେଜନା ଓ ଶୀତଳ ଯୁଦ୍ଧ ଲଗାଇ ବାରୁଦ୍ର ହତ୍ୟାକାଣ୍ଡର ସୌଦାଗରମାନେ ଅସ୍ଥିରତାର ରାଜନୀତି ଖେଳୁଥିଲେ, ସେମାନେ ଆଜ ପୂର୍ଣ୍ଣାହୁତି ପାଇଁ ଅପେକ୍ଷାକରି ରହିଛନ୍ତି ।

ତେଣୁ ବିଶ୍ୱଶାନ୍ତି ଓ ସ୍ୱାଧୀନତାର ସୁରକ୍ଷା ବଂଶଧରଙ୍କର ସବୁଠାରୁ ଜରୁରୀ ଓ ମୌଳିକ ଆବଶ୍ୟକତା ହୋଇ ପଡ଼ୁଛି । ସ୍ପଷ୍ଟଭାବରେ କହିଲେ ସାମ୍ରାଜ୍ୟବାଦ ଓ ଉପନିବେଶବାଦର କବଳରୁ ମୁକ୍ତ ହେବା କୌଣସି ଶକ୍ତି ଶିବିର (Power Block)ର ଅନ୍ତର୍ଭୁକ୍ତ ହେବାକୁ ଅସ୍ୱୀକାର କରିବାର ଅନ୍ୟ ସଂଜ୍ଞା 'ନିରପେକ୍ଷ ନୀତି' ରୂପେ ପରିଚିତ । ଏହି 'ନିରପେକ୍ଷ ନୀତି' ବିଶ୍ୱର ବାସ୍ତବରେ ରୂପପରିଗ୍ରହ ଲାଭ କରି ପାରିଛି, ଉପନିବେଶବାଦର ଶୃଂଖଳାରୁ ମୁକ୍ତ ବହୁଗୋଷ୍ଠୀଙ୍କ ଭିତରୁ । ସ୍ୱତଃ ପ୍ରଶ୍ନ ଆସେ, 'ନିରପେକ୍ଷନୀତି' ଅର୍ଥ କ'ଣ 'ଜଡ଼ିତ ନହେବା' ବା ଆଦୌ ନିଷ୍କ୍ରିୟ ରହିବା ? ଉତ୍ତର ଖୁବ୍ ସରଳ । ଦୁଇଟିରୁ କେଉଁଟି ହେଲେ ଠିକ୍ ନୁହେଁ । ଆନ୍ତର୍ଜାତୀୟ ପରିପ୍ରେକ୍ଷୀରେ ବିଚାର ଓ କାର୍ଯ୍ୟକଳାପର ସ୍ୱାଧୀନତାକୁ ସଠିକ୍ ମାର୍ଗରେ ନିୟନ୍ତ୍ରଣ କରିପାରିବା ଏହି ନୀତିର ଅନ୍ୟତମ ନିର୍ଦ୍ଦେଶ । କାର୍ଯ୍ୟ କ୍ଷେତ୍ରରେ ସାମ୍ରାଜ୍ୟବାଦୀ ଶକ୍ତି ବା ଶିବିର ଠାରୁ ସଂପର୍କ ଛିନ୍ନ କରିବାକୁ ହେବ ।

ଯେ କୌଣସି ରାଷ୍ଟ୍ର ଏହାର ଜାତୀୟ ମୁକ୍ତି ସଂଗ୍ରାମରେ ଶକ୍ତି ଓ ପ୍ରେରଣାର ଅସଲ ଉତ୍ସ ସମାଜବାଦୀ ଶିବିରରେ ସଂଧାନକରି ପାଇଥାଏ । କହିବା ବାହୁଲ୍ୟ ଯେ, ନବସ୍ୱାଧୀନ ବା ସ୍ୱାଧୀନତୋନ୍ମୁଖ ରାଷ୍ଟ୍ରମାନଙ୍କର ନିର୍ଭରଶୀଳ ସହଯୋଗୀ ରୂପେ ଉପନିବେଶବାଦ-ବିରୋଧୀ ରାଷ୍ଟ୍ରମାନଙ୍କର ଅବଦାନ ଏହାର ସର୍ବୋତ୍ତମ ପରିଚୟ ଯାହା ଉପରୋକ୍ତ ଦୁଇ କାରଣରୁ ନିରପେକ୍ଷ ରାଷ୍ଟ୍ରମାନେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ-ଠାରୁ ଚରମ ଆଘାତ ପାଇଥାନ୍ତି, ଶୀତଳଯୁଦ୍ଧ, ଉତ୍ତେଜନାକାଙ୍କ୍ଷୀ ଅସ୍ତ୍ର ପ୍ରତିଯୋଗିତା ମାଧ୍ୟମଦେଇ ।

ସ୍ୱୀକାର କରାଯାଇ ପାରେ ଯେ, ଆଜ ବିଶ୍ୱ ପରିପ୍ରେକ୍ଷୀରେ ନିରପେକ୍ଷ-ଆନ୍ଦୋଳନ ଏକ ଶକ୍ତିଶାଳୀ ଓ ଦୃଢ଼ ନେତୃତ୍ୱ ଆଡ଼କୁ ଆଗେଇ ଚାଲିଛି ଏବଂ ପୃଥିବୀର ବିକାଶ କ୍ଷେତ୍ରରେ ଏକ ପ୍ରମୁଖ ଅଂଶୀଦାରର ଭୂମିକା ନେଉଛି । ମିଳିତ ଜାତିସଂଘ, ମିଳିତ ଜାତିସଂଘ ବାଣିଜ୍ୟ ବିକାଶ ସହାୟତା ପରିଷଦ (UNCTAD), ତୈଳସଂକଟ ଆରବ ଓ ଭିଏତ୍‌ନାମ ପ୍ରସଂଗ ଇତ୍ୟାଦି କ'ଣ ଯଥେଷ୍ଟ ପରିଚୟ ଦେଉନାହିଁ ଯେ ସାମ୍ରାଜ୍ୟବାଦ କିଭଳି ମରଣମାଡ଼ ଖାଇବାକୁ ବସିଛି ଓ ନିରପେକ୍ଷ ନୀତିର ଆନ୍ଦୋଳନ କିଭଳି ଅଧିକରୁ ଅଧିକ ଲୋକପ୍ରିୟ ଓ ବ୍ୟାପକ ହେଉଛି ।

ବହୁ ଚର୍ଚ୍ଚିତ ଏସୀୟ ନିରାପତ୍ତା, ଶାନ୍ତି ଓ ସଂହତି ପରିଷଦ ଓ ଅର୍ଥନୈତିକ ସହଯୋଗ ଚୁକ୍ତି-ସବୁ ଏଭଳି ବିକାଶଶୀଳ ଓ ବର୍ଦ୍ଧିଷ୍ଣୁ ନିରପେକ୍ଷ ଅର୍ଥନୀତି ଗଢୁଥିବା ରାଷ୍ଟ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ।

ଶେଷ ବିଶେଷରେ, ଆତ୍ମରକ୍ଷାର ସୂକ୍ଷ୍ମତମ କୌଶଳ ପ୍ରୟୋଗ କରିବାକୁ ଯାଇ ଉପନିବେଶବାଦୀ ଶକ୍ତିମାନେ ନିରପେକ୍ଷ ନୀତିର ଚାଲିଥିବା ବର୍ଚ୍ଚସ୍ୱୀ ଆନ୍ଦୋଳନକୁ ବିଭ୍ରାନ୍ତ କରିବାକୁ ଉଦ୍ୟମ କରିଛନ୍ତି ମାତ୍ର; ଅସହାୟ ଭାବେ ପରାଜିତ ହୋଇଛନ୍ତି । କାରଣ କୌଣସି ବିଚାର ଏକ ଜାତିର କେବଳ ରାଜନୀତିକୁ ପ୍ରଭାବିତ କରି ନଥାଏ । ଏହା ସଂସ୍କୃତି ଓ ସାମାଜିକ ଆଚାର ବିଚାର ଉପରେ ସୂକ୍ଷ୍ମ ଓ ମନସ୍ତାତ୍ତ୍ୱିକ ପ୍ରଭାବ ପକାଇଥାଏ, ତାହା ଯେ' ରକମର ଆଦର୍ଶ ବା ବିଚାର ହେଉନା

ନାହିଁ କି; ଏହା ଏକନୀରବ ଗତିରେ ଚାଲିଥିବା ଗତିଧାରା । ସେହିଭଳି ଅର୍ଥନୀତି, ସମାଜବାଦୀ ଇତ୍ୟାଦି । ନିର୍ଦ୍ଦିଷ୍ଟ ଏକ ବିଷୟକୁ ସମ୍ପୂର୍ଣ୍ଣ ଗ୍ରହଣ କରି ଉଦନରୂପେ ନକ୍ସା ଟାଣିଥାଏ ଭବିଷ୍ୟତ୍ ପାଇଁ ।

ଏଠାରେ ଉଲ୍ଲେଖ କରିବା ଅନାବଶ୍ୟକ ଯେ, ନିରପେକ୍ଷ ନୀତିବସ୍ତୁର ଏକ ଜନପ୍ରିୟ ଅଙ୍ଗ 'ଗଣଯୋଗା ଯୋଗ', ସଂବାଦ ସରବରାହ ଦରକାରୀ ରାଷ୍ଟ୍ରବ୍ୟବସ୍ଥା'ର ଏକ ଉତ୍ତମ ଅଙ୍ଗସ୍ୱରୂପ । ଏହା କହିବାର ଯଥାର୍ଥ୍ୟ ଯଥେଷ୍ଟ ରହିଛି ।

ସଂବାଦପତ୍ର ବୋଧହୁଏ ସର୍ବାଦୃତ 'ଗଣତନ୍ତ୍ର'ର ସୁସ୍ପଷ୍ଟ ମୁଖ୍ୟପତ୍ରମାନଙ୍କ ମଧ୍ୟରୁ ଅଗାଡ଼ି ଗୁରୁତ୍ୱପୂର୍ଣ୍ଣ ଅଟୋଠିକ୍ ସଂବାଦକୁ ଠିକ୍‌ଭାବରେ ପରିବେଷଣ କରିବାର ଚିନ୍ତା ନେଇ ବିକାଶଶୀଳ ରାଷ୍ଟ୍ରମାନେ 'ଏକ ନିରପେକ୍ଷ ସଂବାଦ ଗୋଷ୍ଠୀ' ଗଠନର ପ୍ରସ୍ତାବକୁ ଗତ ଜୁଲାଇ ମାସ ଦ୍ୱିତୀୟ ସପ୍ତାହରେ ରୂପ ଦେଇଛନ୍ତି ।

ରାଜନୈତିକ କାରଣରୁ ଭୌଗୋଳିକ ଭାବରେ ସାମ୍ରାଜ୍ୟବାଦୀ, ଉପନିବେଶବାଦୀ ଶାସକବର୍ଗଙ୍କ ଠାରୁ ବିଚ୍ଛିନ୍ନ ହୋଇଥିଲେ ମଧ୍ୟ ସଂବାଦ ଯୋଗାଯୋଗ କ୍ଷେତ୍ରରେ ଅନେକାଂଶରେ ପାଶ୍ଚାତ୍ୟ ଜଗତର ଉପରେ ନବ-ସ୍ୱାଧୀନ ରାଷ୍ଟ୍ର ମାନଙ୍କୁ ନିର୍ଭର କରିବାକୁ ହେଉଥିଲା ଓ ଏକଚାଟିଆ ସଂବାଦଗୋଷ୍ଠୀର ନିର୍ଦ୍ଦେଶକୁ ମାନିନେବାକୁ ହେଉଥିଲା । ସତ୍ୟସଂବାଦକୁ ବିକୃତଭାବରେ ପରିବେଷଣକରି କେନେ ଭଣ୍ଡିତ୍ୟରେ ସାମ୍ରାଜ୍ୟବାଦର ଅସଲ ଲାଳସାକୁ ଚରିତାର୍ଥ କରିବାପାଇଁ ପ୍ରାଚ୍ୟ ଜଗତର ସଦ୍ୟମୁକ୍ତ ରାଷ୍ଟ୍ରମାନେ ପ୍ରତ୍ୟକ୍ଷଭାବେ ଅବଦାନ ଦେଉଥିଲେ । ଅନେକ ରାଷ୍ଟ୍ରର ସ୍ୱାଧୀନତାର ସୁଫଳକୁ ବିକୃତକରି, ସତ୍ୟକୁ ଢାଙ୍କିବାର 'ମନୋପଲି' ବା ଏକଚାଟିଆ ନୀତି ଉପରେ ଭାରତର ରାଜଧାନୀ ନୂଆଦିଲ୍ଲୀ ଠାରେ ଅନୁଷ୍ଠିତ "ନିରପେକ୍ଷରାଷ୍ଟ୍ର ଗୋଷ୍ଠୀ ସଂବାଦ ସଂସ୍ଥା" ଏକ ଶକ୍ତ ଆଘାତ ଆଣିଛି । ଏହା ସ୍ପଷ୍ଟଭାବେ ପ୍ରତିପାଦିତ ହୋଇ ସାରିଛି, ଜୁଲାଇ ମାସ ୩ୟ ସପ୍ତାହରେ ପାଶ୍ଚାତ୍ୟ ଜଗତର 'ସଂବାଦ ସଂସ୍ଥାମାନଙ୍କର ବିଚଳିତ ହେବା'ରୁ ।

ତେଣୁ ଏଭଳି ଏକ ନିରପେକ୍ଷ ସଂବାଦ 'ପୁଲ୍' ଗଠନର ଗୁରୁତ୍ୱ ଅନ୍ତତଃ ପ୍ରତ୍ୟେକ ନବସ୍ୱାଧୀନ ରାଷ୍ଟ୍ର ପକ୍ଷରେ କେତେ ଅଧିକ ତାହା ଏଥିରୁ ଅନୁଭବ କରାଯାଇପାରେ । ବିଶେଷକରି, ଭାରତବର୍ଷ ଭଳି ସଂବିଧାନର ସମସ୍ତର ରୁଚିକୁ ସମ୍ମାନ ଦେବାପାଇଁ "ସମାଜବାଦୀ ଗଣତାନ୍ତ୍ରିକ ଧର୍ମନିରପେକ୍ଷ ସାଧାରଣ ତନ୍ତ୍ର" ନାମିତ କରାଯାଇଥିବା ରାଷ୍ଟ୍ର ପକ୍ଷରେ ଏହାର ପ୍ରୟୋଜନୀୟତା ଖୁବ୍ ବେଶୀ ।

ଆଜି ବିଶ୍ୱ ଇତିହାସ ନୂଆ ଧର ମୋଡ଼ ନେଇଛି ଅଣ-ମୁକ୍ତିବାଦୀ ମାର୍ଗରେ ସଫଳ ବାସୋପଯୋଗୀ ପୃଥିବୀଟିଏ ମାନବସମାଜକୁ ଉପହାର ଦେବ, ଯେଉଁଠାରେ ଶୀତଳ ଯୁଦ୍ଧର ଆତଙ୍କ ନଥିବ; ନଥିବ ମଣିଷ ଦ୍ୱାରା ମଣିଷର ଶୋଷଣ ନୀତି ।

ନିରପେକ୍ଷ ରାଷ୍ଟ୍ରମାନଙ୍କର ଶୀର୍ଷ ସମ୍ମିଳନୀମାନ ଅନୁଷ୍ଠିତ ହୋଇସାରିଛି । ୧୯୬୧ ମସିହାରେ ଯୁଗୋସ୍ଲାଭିଆର ରାଜଧାନୀ ବେଲ୍‌ଗ୍ରେଡ଼ଠାରେ ଏହା ପ୍ରଥମେ ଆରମ୍ଭ ହେଲା ଓ ପରେ ୧୯୬୪ ରେ କାଇରୋ, ଲୁସାକାଠାରେ ୧୯୭୦ ଏବଂ ଆଲଜିଅର୍ସଠାରେ ୧୯୭୩ ରେ ଅନୁଷ୍ଠିତ ହୋଇଛି । ୧୯୭୫ ମସିହାରେ ଲିମାଠାରେ ଅନୁଷ୍ଠିତ ନିରପେକ୍ଷରାଷ୍ଟ୍ର ବୈଦେଶିକ ସଚିବ ସମ୍ମିଳନୀରେ ଯୋଗ ଦେଇଥିବା ରାଷ୍ଟ୍ର ସଭ୍ୟଙ୍କ ସଂଖ୍ୟା ୮୪ କୁ ବଢ଼ିଯାଇଛି—ଆଫ୍ରିକାରୁ ୪୫, ଏସିଆରୁ ୨୯, ଲାଟିନ୍ ଆମେରିକାରୁ ୮ ଓ ୟୁରୋପରୁ ୨ ପ୍ରତିନିଧିତ୍ୱ କରିଥିଲେ ।

ଅଗଷ୍ଟ ମାସ ପ୍ରଥମାର୍ଦ୍ଧରେ କଲମ୍ବୋଠାରେ ଏହି ଶୀର୍ଷ ସମ୍ମିଳନୀ ବସିସାରିଛି । ପ୍ରତିଟି ସମ୍ମିଳନୀ ବିଶ୍ୱ-ନିରପେକ୍ଷତା ଆନ୍ଦୋଳନର ଗୋଟିଏ ଗୋଟିଏ ମାଇଲଖୁଣ୍ଟ । "ସମ୍ବାଦଗୋଷ୍ଠୀ" ଗଠନର ସମ୍ମିଳନୀ ପ୍ରଥମଥର ପାଇଁ ଜୁଲାଇ ମାସ ୮ ତାରିଖରେ ନୂଆଦିଲ୍ଲୀରେ ୫ ଦିନ ପାଇଁ ବସିଥିଲା ।

ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କର ଉଦ୍‌ଘାଟନୀ ଭାଷଣରେ କହିଥିଲେ, "This attempt to promote a pooling and sharing of the work of our national news agencies is a good beginning. We want to hear Africans on events in Africa. You should similarly be able to get Indian explanations of events in India. It is astonishing that we know so little about leading poets, novelists, historians and editors of various Asian, African, Latin American countries while we are familiar with minor authors and columnists of Europe and America × × × this conference will work the beginning a determined effort to rectify another lingering consequence of colonialists."

ଶ୍ରୀମତୀ ଗାନ୍ଧୀ ନିରପେକ୍ଷ ରାଷ୍ଟ୍ର ସମ୍ବାଦ ଗୋଷ୍ଠୀରେ ଠିକଣା କଥାଟିଏ ବଡ଼ ଯଥାର୍ଥ ଭାବରେ ଉପସ୍ଥାପିତ କରିଛନ୍ତି । ପ୍ରୟୋଜନୀୟ ରାଜନୈତିକ ବିସ୍ତାରକୁ ଓ ମାନବ ସମାଜର କଲ୍ୟାଣକୁ ଦୃଷ୍ଟିରେ ରଖି ପ୍ରୟୋଗ କରିବାପାଇଁ ଶ୍ରୀମତୀ ଗାନ୍ଧୀ ସମବେତ ନିରପେକ୍ଷ ରାଷ୍ଟ୍ର ପ୍ରତିନିଧିମାନଙ୍କର ଆସ୍ଥାର ବାଣୀକୁ ସମୁଚିତ ଭାବରେ ପ୍ରକାଶ କରିଛନ୍ତି । ଏହି ସମ୍ମିଳନୀରେ ପ୍ରଧାନ ମନ୍ତ୍ରୀଙ୍କ ସ୍ୱତନ୍ତ୍ର ଦୂତ ଶ୍ରୀ ମହମ୍ମଦ ୟୁନୁସ୍ ଭାରତୀୟ ପ୍ରତିନିଧି ଦଳର ନେତୃତ୍ୱ ନେଇଥିଲେ । ଶ୍ରୀ ୟୁନୁସ୍ ବୋଧହୁଏ ସମ୍ମିଳନୀର ଜଣେ ଆକର୍ଷଣୀୟ ବ୍ୟକ୍ତିତ୍ୱ ଥିଲେ ଯେ ଓ କାର୍ଯ୍ୟକ୍ରମର ଶେଷ ବେଳକୁ ଏହି ସମ୍ବାଦଗୋଷ୍ଠୀ ସମାବେଶର ସଭାପତିରୂପେ ନିର୍ବାଚିତ ହେଲେ ।

ସମ୍ମିଳନୀରେ ଆଲୋଚିତ ଓ ବିଭିନ୍ନ ଭାବରେ ଗୃହୀତ ପ୍ରସଙ୍ଗମାନଙ୍କ ମଧ୍ୟରୁ ପ୍ରାୟ ୮୦ଟି ନିରପେକ୍ଷ ରାଷ୍ଟ୍ର ମଧ୍ୟରୁ ୩୫ଟି ରାଷ୍ଟ୍ରଙ୍କର ସ୍ୱାଧୀନ ସମ୍ବାଦ ଏଜେନ୍ସି ରହିଥିବା ପ୍ରାୟ ୨୦୦ ଅର୍ ଦ୍ୱିପାକ୍ଷିକ ରାଜିନାମା ଭିତ୍ତିରେ ସମ୍ବାଦ ଯୋଗାଇବାର ଚୁକ୍ତି ଓ ଗତ ଦୁଇ ବର୍ଷ ଭିତରେ ଗଠିତ ଦୁଇ ଡଜନ ହେବ ସମ୍ବାଦ ଏଜେନ୍ସି ପ୍ରଭୃତି ଉଲ୍ଲେଖ ଯୋଗ୍ୟ । ପାଶ୍ଚାତ୍ୟ ସମ୍ବାଦ ଏଜେନ୍ସିର ଏକଚାଟିଆ ପ୍ରଭାବ ଓ ରୂପକୁ ଚୂର୍ଣ୍ଣ କରିବାପାଇଁ ନାନାବିଧ ପ୍ରସ୍ତାବ ଗୃହୀତ ହୋଇଛି । କାରଣ ସମ୍ମିଳନୀ ଉପଲବ୍ଧି କଲା ଯେ, ନିରପେକ୍ଷ ନୀତିହିଁ ଆଜିର ପରିପ୍ରେକ୍ଷୀରେ ସାମ୍ରାଜ୍ୟବାଦ ବିରୋଧୀ ଭୂମିକାର ପ୍ରମୁଖ ବାହିନୀରେ ସଂଗ୍ରାମ କରିବ ଓ ତାର ଅସ୍ତ୍ର ହେବ ଏହି ନିରପେକ୍ଷ ସମ୍ବାଦ ପୁଲ୍ ।

ଗୃହୀତ ପ୍ରସ୍ତାବ ସବୁ ଦେଖିଲେ ଜଣା ପଡ଼େ ଯେ—

(କ) ସମ୍ବାଦ ଏଜେନ୍ସି ପୁଲ୍ ପାଇଁ ସମବେତ ନିରପେକ୍ଷ ରାଷ୍ଟ୍ରଙ୍କ ମଧ୍ୟରେ ସମ୍ବାଦ ଯୋଗାଯୋଗ ବ୍ୟବସ୍ଥା ପାଇଁ ସମ୍ବିଧାନ ଗୃହୀତ ହେଲା ।

(ଖ) ୧୪ ଜଣ ସଦସ୍ୟ ଆଉ ଭାରତର ଅଧ୍ୟକ୍ଷତାରେ ଏକ ସମନ୍ୱୟ କମିଟି ଗଠିତ ହେଲା । 'ପୁଲ୍'ର ସଠିକ କାର୍ଯ୍ୟକାରିତା ଦିଗରେ ଏହି କମିଟି ଦୃଷ୍ଟି ଦେବେ ।

(ଗ) ଦିଲ୍ଲୀ ଘୋଷଣା ଭାରତ ଦ୍ୱାରା ପ୍ରସ୍ତୁତ ହୋଇଥିଲା ଓ ସାମାନ୍ୟ ପରିବର୍ତ୍ତନ ସହିତ ଗୃହୀତ ହେଲା ।

(ଘ) ରେଡ଼ିଓ, ଦୂର ଦର୍ଶନ, ସିନେମା ପ୍ରଭୃତି ଗଣ ଯୋଗାଯୋଗର ମାଧ୍ୟମ ସମ୍ପର୍କିତ ସୂତ୍ର ଉପରେ ପରବର୍ତ୍ତୀ ପଦକ୍ଷେପ ନେବାପାଇଁ ପ୍ରସ୍ତାବ ଗ୍ରହଣ କରାଯାଇଛି ।

(ଙ) ନିରପେକ୍ଷ ରାଷ୍ଟ୍ରମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ଯୋଗାଯୋଗର କାର୍ଯ୍ୟକାରିତାକୁ ଅନୁଧ୍ୟାନ କରିବାପାଇଁ ଏକ ୧୨ ଜାତିୟ ବିଶାରଦ କମିଟି ନିଯୁକ୍ତ ହେଲେ ।

(ଚ) କଲମ୍ବୋ ଶିଖର ସମ୍ମିଳନରେ ନିରପେକ୍ଷ ରାଷ୍ଟ୍ର ମୁଖ୍ୟଙ୍କର ରାଜନୈତିକ ଶୋଷଣ ନୀତି ଭିତ୍ତି ଓ ବସ୍ତୁର ଉପରେ 'ମାସ୍‌ମେଡ଼ିଆ'ର ଅନ୍ତର୍ଭୁକ୍ତ ପ୍ରସ୍ତାବ—ଗ୍ରହଣ କରାଯିବ ।

ସର୍ବୋପରି ନିରପେକ୍ଷ ରାଷ୍ଟ୍ରମାନଙ୍କର ମନ୍ତ୍ରୀସ୍ତରୀୟ ସମ୍ମିଳନୀ ସର୍ବପ୍ରଥମଥର ପାଇଁ ଭାରତର ଆତିଥେୟତା ଗ୍ରହଣ କରି ଅନୁଷ୍ଠିତ ହେଲା ଓ ସଫଳ ଭାବରେ ଉଦ୍‌ଯାପିତ ହେଲା । ଭାରତର ସୂଚନା ଓ ବେତାର ମନ୍ତ୍ରୀ ଶ୍ରୀ ବିଦ୍ୟାଚରଣ ଶୁକ୍ଳଙ୍କର ଭୂମିକା ଅଭିନନ୍ଦନୀୟ । ଭାରତ ବର୍ଷର ଉକ୍ତ ଦର୍ଶନର ନିରପେକ୍ଷ ନୀତି ଯେ ଏକ ସଫଳ ରୂପ ପରିଗ୍ରହ ଲାଭ କରିଛି ତାହା ସ୍ପଷ୍ଟ ଭାବେ ଘୋଷଣା କରି ଶ୍ରୀ ଶୁକ୍ଳ କହିଥିଲେ "Such link-up is typical of the ways through which former colonial powers still wish to maintain their material and intellectual hold and is parallel to a simiar linkup witnessed in the economic-field where internal elements of vested interests make common course with external elements in the name of freedom of trade and business. This is yet another area which reveals the deep political implications of the problem of communication media and thus deserves the notice of higher level of leadership in every country".

ତେଣୁ ଭାରତ, କ୍ୟୁବା, ଭିଏତ୍‌ନାମ ଓ ଆଲ୍‌ଜେରିଆ ଭଳି ରାଷ୍ଟ୍ରଙ୍କ ଉପରେ ପାଶ୍ଚାତ୍ୟ ଶକ୍ତିଙ୍କର କୁତ୍ସିତ ଦୃଷ୍ଟିଭଙ୍ଗୀ ପ୍ରତି ନିରପେକ୍ଷ ଗୋଷ୍ଠୀଭୁକ୍ତ ରାଷ୍ଟ୍ରମାନେ ସତର୍କ ଭାବେ ଲକ୍ଷ୍ୟ ରଖିବେ । ଏହା ଶ୍ରୀ ଶୁକ୍ଳଙ୍କର ବକ୍ତବ୍ୟର ଉଦ୍ଦେଶ୍ୟ ।

ନିରପେକ୍ଷ ରାଷ୍ଟ୍ରମାନଙ୍କ ମଧ୍ୟରେ ଗଢି ଉଠିଥିବା କ୍ରମବର୍ଦ୍ଧିଷ୍ଣୁ ଐକ୍ୟ ଓ ଦୃଢ଼ତା ସାମ୍ରାଜ୍ୟବାଦ ଓ ଉପନିବେଶବାଦୀ ପାଶ୍ଚାତ୍ୟ ଶକ୍ତିମାନଙ୍କ ମତଲବ ଉପରେ କୁଠାରାଘାତ କରିଛି । ଏହାକୁ ଗଣ ଯୋଗାଯୋଗ କ୍ଷେତ୍ରରେ ଏକ ନୂତନ ଯୁଗର ଅଭ୍ୟୁଦୟ ଘଟିଲା ବୋଲି କୁହାଯିବ ! ତେଣୁ ଭାରତ ବର୍ଷ ଭଳି ମୁକ୍ତିକାମୀ ଦେଶପ୍ରେମୀ ନିରପେକ୍ଷ ରାଷ୍ଟ୍ରର ନାଗରିକମାନଙ୍କ ପାଇଁ ଏକ ଆହ୍ୱାନରୂପେ ଏହା ଆସିଛି ।

ଲୋକମାନଙ୍କର ଆଶା ଆକାଂକ୍ଷାର ସଫଳ ପ୍ରତିଫଳନ ପାଇଁ କୌଣସି ପ୍ରକାର ବାଧା କମ୍ବା ପ୍ରତିବନ୍ଧକକୁ ଆଉ ଅଧିକ ଦିନ ପାଇଁ ବରଦାସ୍ତ କରାଯିବ ନାହିଁ । ପରନ୍ତୁ ଏହା ଦେଶ ଦେଶ ମଧ୍ୟରେ ବୈଜ୍ଞାନିକ ବିଦ୍ୟାର ପାରସ୍ପରିକ ବିନିମୟ ପାଇଁ ପ୍ରଶସ୍ତ ପଥ ଖୋଲିଦେଲା ।

କଲମ୍ବୋଠାରେ ପଞ୍ଚମ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀ ପାଇଁ ଏହା ବାସ୍ତବ ଭିତ୍ତି ପ୍ରସ୍ତୁତ କରିଦେଲା ଓ ଆଗାମୀ 'ସମ୍ବାଦ ପୁଲ' ସମ୍ମିଳନୀ 'ଇରାକ୍'ରେ ବସିବାପାଇଁ ସ୍ଥିର ହୋଇଛି ।

ଏହି ସମ୍ମିଳନୀ ବସିବା ଦ୍ୱାରା ଦୁଇଟି କଥା ଅଧିକ ସ୍ପଷ୍ଟ ଭାବେ ପ୍ରତିପାଦିତ ହୋଇ ପାରିଲା : ପ୍ରଥମଟି ହେଉଛି, ସମ୍ବାଦ ଯୋଗାଯୋଗ କ୍ଷେତ୍ରରେ ଏକ ଗୁରୁତର ସଂଘର୍ଷର ସୂତ୍ରପାତ ହେଲା--ଯାହାକି ଉତ୍ତର ଗୋଷ୍ଠୀମାନଙ୍କୁ ଭେଟିବ । ଦ୍ୱିତୀୟଟି ହେଉଛି, ଏକ ସୁନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟର ଭିତ୍ତି ନେଇ ଉତ୍ତର ... ଯାହା ଗଳି ପଡ଼ୁଛି ତା'ର ଅବହେଳିତ ପରିବେଶ ସ୍ୱତନ୍ତ୍ରରେ ଶୃଙ୍ଖଳ ଭାଙ୍ଗି ଖଣ୍ଡ ଖଣ୍ଡ କରିବାକୁ ସମାଜବାଦୀ ବିସ୍ତରଣ ବିଶ୍ୱରେ ସଙ୍କଳ୍ପ କରିବାକୁ ପଥ ଦେଖାଇଦେଲା ।

ଆଗାମୀ ଦିନରେ ନିରପେକ୍ଷ ନୀତିର ଆନ୍ଦୋଳନ ବଳିଷ୍ଠ ମଣ୍ଡିତ ହେବ ଓ ଭାରତ ବର୍ଷ ପୂର୍ବ ସାମନ୍ତବାଦ-ବିରୋଧୀ ସଂସ୍କୃତିର ପରିଚୟ ଦେଇ ବିଶ୍ୱ ସଂହତିର ନେତୃତ୍ୱ ଦେବାକୁ ଆଗେଇ ଆସିବ, ସନ୍ଦେହ ନାହିଁ ।

# ପ୍ରଧାନମନ୍ତ୍ରୀଙ୍କ ଅର୍ଥନୈତିକ କାର୍ଯ୍ୟକ୍ରମର ସଫଳତାରେ ଉଠା ଜଳସେଚନର ଅବଦାନ

ଓଡ଼ିଶାର ବିପୁଳ ଭୂତଳ ଜଳ ସମ୍ପଦର ବିନିଯୋଗପାଇଁ ଉଠା ଜଳସେଚନ କର୍ପୋରେସନ ଏକ ସୁପରିକଳ୍ପିତ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି ।

କର୍ପୋରେସନ ଏପର୍ଯ୍ୟନ୍ତ ରାଜ୍ୟର ବିଭିନ୍ନ ଜିଲ୍ଲାରେ ୧,୩୭୧୪ ଉଠା ଜଳସେଚନ ଯୋଜନାରେ ବିଦ୍ୟୁତଶକ୍ତି ସଂଯୋଗ କରି ସାରିଲେଣି ।

ଏହିସବୁ ଯୋଜନା ଫଳରେ ପ୍ରାୟ ଏକ ଲକ୍ଷ ୩୦ ହଜାର ଏକର ଜମିରେ ଖରିଫ ଫସଲ ଓ ୫୨ ହଜାରରୁ ଊର୍ଦ୍ଧ୍ୱ ଜମିରେ ରବି ଫସଲପାଇଁ ଜଳସେଚନ ବ୍ୟବସ୍ଥା କରାଯାଇଛି ।

ଆସନ୍ତା ରବି ଫସଲ ପାଇଁ କର୍ପୋରେସନ ପକ୍ଷରୁ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି ଏବଂ ବହୁ ପରିମାଣ ଜମିରେ ଉଠା ଜଳସେଚନର ଉପଯୋଗପାଇଁ ବ୍ୟବସ୍ଥା ହେଉଛି ।

ରାଜ୍ୟର ଚାଷୀମାନେ ଉଠା ଜଳସେଚନ ଯୋଜନାଗୁଡ଼ିକର ସମ୍ପୂର୍ଣ୍ଣ ଉପଯୋଗ କରି ରାଜ୍ୟର ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଦେଶକୁ ଖାଦ୍ୟଶସ୍ୟ ଉତ୍ପାଦନରେ ସ୍ୱାବଲମ୍ବୀ କରିବାରେ ସାହାଯ୍ୟ କରନ୍ତୁ ।

ନିର୍ଦ୍ଦେଶକ

ଉଠା ଜଳସେଚନ କର୍ପୋରେସନ, ଓଡ଼ିଶା

ଭୁବନେଶ୍ୱର



ବିଦ୍ୟୁତ୍ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦିବ୍ୟଲୋଚନ ଶେଖର ଦେଓ ବଲାଙ୍ଗୀର ଜିଲ୍ଲାର ଅନ୍ତରଭଡା ଗ୍ରାମ ବିଦ୍ୟୁତ୍‌କରଣ କାର୍ଯ୍ୟକ୍ରମ ଉଦ୍‌ଘାଟନ କରୁଛନ୍ତି ।



ବିଂଶସୂତ୍ରୀ ଅର୍ଥନୈତିକ କାର୍ଯ୍ୟକ୍ରମର ବର୍ଷପୂର୍ତ୍ତି ଉପଲକ୍ଷେ ସମ୍ବଲପୁର ଜିଲ୍ଲା ଲୋକ ସମ୍ପର୍କ ବିଭାଗ ପକ୍ଷରୁ ଆୟୋଜିତ ଆଲୋଚନାଚକ୍ରରେ ବିଭିନ୍ନ ସ୍କୁଲ କଲେଜର ଛାତ୍ରଛାତ୍ରୀଙ୍କ ଅଂଶ ଗ୍ରହଣ ।



ରାଜସ୍ୱ ଓ ଗୋଷ୍ଠୀ ଉନ୍ନୟନ ଉପମନ୍ତ୍ରୀ ଶ୍ରୀ ମତଲୁବ୍ ଅଲି, ସମ୍ବଲପୁର ଜିଲ୍ଲା ବରଗଡ଼ଠାରେ ଓଡ଼ିଶାର ବିଶିଷ୍ଟ ନାରୀ ନେତ୍ରୀଙ୍କ ପକ୍ଷରୁ ଆୟୋଜିତ ସମ୍ମିଳନୀରେ ଉଦ୍‌ବୋଧନ ଦେଉଛନ୍ତି । ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦିକା ଶ୍ରୀମତୀ ମୈତ୍ରୀ ନାୟକ, ପାର୍ଲିଆମେଣ୍ଟ ସଦସ୍ୟା ଶ୍ରୀମତୀ ଶିଲା କାଉଲ ଓ ଶ୍ରୀମତୀ ମୁକୁଳ ବାନାର୍ଜୀ ଏହି ସମ୍ମିଳନୀରେ ଉପସ୍ଥିତ ଅଛନ୍ତି ।



ରାଜସ୍ୱ ମନ୍ତ୍ରୀ ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ କୋରାପୁଟ ଜିଲ୍ଲା ପଟାଙ୍ଗୀ ଅଞ୍ଚଳରେ ଆଦିବାସୀ ଲୋକଙ୍କୁ ଦିଆଯାଇଥିବା ସିଲିଂ ବହିର୍ଭୂତ ଜମି ବୁଲି ଦେଖୁଛନ୍ତି ।



୧୯୭୬ ସ୍ୱାଧୀନତା ଦିବସରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଭୁବନେଶ୍ୱରଠାରେ ନବନିର୍ମିତ 'ସୂଚନା ଭବନ' ଉଦ୍‌ଘାଟନ କରୁଛନ୍ତି ।



୧୯୭୬ ଅଗଷ୍ଟ ୭ ତାରିଖ ଦିନ ଶିଳ୍ପ ପରିବହନ ଓ ଖଣି ରାଷ୍ଟ୍ରମନ୍ତ୍ରୀ ଡାକ୍ତର କୃପାସିନ୍ଧୁ ଭୋଇ ଓ ଓଡ଼ିଶା ଖଣି କର୍ପୋରେସନର ଚେୟାରମ୍ୟାନ ଶ୍ରୀ ହବିବ୍ ଅହମ୍ମଦ, ଶିକ୍ଷାନୁଷ୍ଠାନମାନଙ୍କରେ ସଞ୍ଚୟ ବ୍ୟାଙ୍କ ଖୋଲିବା ନିମନ୍ତେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କୁ ଓଡ଼ିଶା ଖଣି କର୍ପୋରେସନ୍ ତରଫରୁ ୫୦ ହଜାର ଟଙ୍କାର ଚେକ୍ ପ୍ରଦାନ କରୁଛନ୍ତି



ବଲାଙ୍ଗୀର ଜିଲ୍ଲାପାଳ, ଜିଲ୍ଲା କ୍ଷୁଦ୍ର କୃଷି ଉନ୍ନୟନ ସଂସ୍ଥା ପକ୍ଷରୁ ଆୟୋଜିତ କୃଷି ପ୍ରଦର୍ଶନୀ ବୁଲି ଦେଖୁଛନ୍ତି



ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀ ଦେବେନ୍ଦ୍ର ଶତପଥୀ ଢେଙ୍କାନାଳ ଜିଲ୍ଲା ଭୁବନ ହାଇସ୍କୁଲ ପ୍ରାଙ୍ଗଣରେ ବୃକ୍ଷରୋପଣ କରୁଛନ୍ତି



# ରକ୍ତର ଶବ

ଗାଁଠାରୁ ଅଧ ମାଇଲ୍‌ଏ ଦୂରରେ ଗୋଟିଏ ଛୋଟ ଗାଈଁଆ ବସ୍‌ଷ୍ଟାଣ୍ଡ, ସେଇ ବସ୍‌ଷ୍ଟାଣ୍ଡରେ ଦଶ ଅନ୍ଟକଲ ପରେ ଶୁଦ୍ଧୋଧନ ପ୍ରାୟ ଛଅ ବାରଟା ପଣକ ବସରୁ ଓହ୍ଲାଇଲେ । ଗାଁକୁ ଆସିବା ପୂର୍ବରୁ ସେ ଘରକୁ ଚିଠି ଲେଖିଥିବା ହେତୁ ତାଙ୍କ ବୃଦ୍ଧ ଚାକର ଆସିଥିଲା ବସ୍‌ଷ୍ଟାଣ୍ଡକୁ ଛାନଣ ପଦ ସୁଟ୍‌କେଶ ବୋହି ନେବାକୁ ।

ଶୁଦ୍ଧୋଧନ ତାଙ୍କ ପଲ୍ଲୀମାନଙ୍କ ସହିତ ଗାଁକୁ ଚାଲିଲେ ।

ଗତ ରାତିରେ ଅଳ୍ପଏ ବର୍ଷା ହୋଇ ଯାଇଥିଲା ସମ୍ଭବତଃ । କାରଣ ମୁଖ୍ୟ ସଡ଼କରୁ ଯେଉଁ ରାସ୍ତାଟି ତାଙ୍କ ଗାଁକୁ ଯାଇଛି ସେଇ ମୋରମ ବିଛା ରାସ୍ତାରେ ରହିଯାଇଛି ଗତରାତି ବର୍ଷାର ସାମାନ୍ୟ ପାଦଚିହ୍ନ । ସେଣୁ ରାସ୍ତାଟି କେଉଁ ଅଂଶରେ ଓଦା ଓ କେଉଁ ଅଂଶରେ ସକାଳର ଖରାଖାଇ କର୍ଷିତ ଉଷ୍ଣତା କୁ ଅର୍ଜନ କରିଛି ।

ଶୁଦ୍ଧୋଧନ ଅନାଇଁଲେ ରାସ୍ତା ଦୁଇ ପାର୍ଶ୍ୱର କ୍ଷେତମାନଙ୍କୁ ।

ପିଲାମାନେ ତାଙ୍କ ଘରର ଚାକର ପଛେ ପଛେ ଚାଲିଛନ୍ତି ।

ରାସ୍ତାର ଦୁଇ ପାର୍ଶ୍ୱରେ ଶୋଇ ରହିଛି ମାଇଲ୍ ମାଇଲ୍ ଧାନ ପଡ଼ିଆ ଜମି । କେଉଁଠି କେମିତି ଅଳ୍ପଏ ଅଳ୍ପଏ ଦୂବ ହୋଇ, କାଆଁଳର ଟେକା ଦବୁ ଦେଖି ହେଉଛି ଦୂବକୁ ସ୍ପଷ୍ଟ ଭାବରେ ।

ଶୁଦ୍ଧୋଧନ ଅବାକ୍ ହେଲେ । ଆଷାଢ଼ର ଅନ୍ତ ହେଲା । କ୍ଷେତରେ ଧାନଗଛ କାହିଁ ? ତାଙ୍କ ପିଲାଦିନେ ରଜଦେଲକୁ କ୍ଷେତ ସବୁ ଭରି ଯାଉଥିଲା ଅଣ୍ଟାଏ କମ୍ବା ପାଚିଲେ ଉଚ୍ଚର ଶ୍ୟାମଳ ଧାନଗଛର ବାସ୍ନାରେ । ମାତ୍ର ଆଜି ଏ କ'ଣ ? କ୍ଷେତ ତ ସାର ହୋଇନାହିଁ । ଧାନଗଛର ଚିହ୍ନ କାହିଁ ?

ଶୁଦ୍ଧୋଧନଙ୍କ ଉଦ୍ଭାସିତ ସ୍ୱଦେଶୀ ଚେତନା ତଥାପି ଗାଁ ରାସ୍ତାରେ ଖେଳୁଥିଲା କେବଳ ଉଚ୍ଛ୍ୱାସ ଥିଲା କପଟ ଏକ ଉଦ୍ଯୁକ୍ତତାର ଅନନୁଭୂତ ଆମୋଦରେ । ଗାଁ ରାସ୍ତାରେ କେହି କେହି ଗାଁ ଲୋକ ଦେଖା ହେଉଥିଲେ ଓ ଟସ୍ ଟସ୍ ଢଙ୍ଗରେ ଭଲ ଅଛ କି ନାହିଁ ବୋଲି ପଚାରି ଦେଉଥିଲେ ।

ଶୁଦ୍ଧୋଧନ ଘରେ ପହଞ୍ଚିଲେ । ସେଦିନ ସନ୍ଧ୍ୟା ହେଲା । ଆଜି ସଜବାଜ । ଆଜିଭଳି ଦିନରେ ସାରା ଗାଁର ମାଇପିମାନେ ଖାଉ ଦକାଗର ରନ୍ଧି ପିଠାପଣା, ଛୁଅ ତରକାରି ନଅଭଜା କରିବସନ୍ତି । କେତେ ଖାସି କଟାଯାଏ । ଘରେ ଘରେ ହୁଏ ମାଂସ ତରକାରି । ଦୂର ବିଦେଶରେ ରହୁଥିବା ଗାଁ ଲୋକେ ଏଇ ଫେରି ଆସନ୍ତି ଗାଁକୁ । ମୋଟାମୋଟି ଭାବରେ ସାରା ଗାଁରେ ଦେଖାଯାଏ ଏକ ନୂଆ ଉନ୍ମାଦନା ଓ ପ୍ରତି ପରିବାରରେ ଦେଖାଦିଏ ଏକ ପ୍ରାଣବାନ ବନ୍ୟାର ଉତ୍ପ୍ଲାବନ ।

ଦାଣ୍ଡବାରଣ୍ଡାର ସ୍ଥୋପ୍ପା ଉପରେ ବସି ଶୁଦ୍ଧୋଧନ ସାରା ଗାଁର ପରିବେଶକୁ ଲକ୍ଷ୍ୟ କରୁଥିଲେ । ଯଦିଓ ପ୍ରତି ବର୍ଷ ସେ ରଜବେଳକୁ ଗାଁକୁ ଆସି ପାରନ୍ତି ନାହିଁ, ତଥାପି ଦୁଇ ତିନି ବର୍ଷରେ ଥରେ ଲେଖାଏ ସେ ଆସିଥାନ୍ତି ଗାଁକୁ । ସବୁଥର ଆସି ରଜ ଉତ୍ସବର ଆଂଶିକ ଉନ୍ମାଦନା ସେ ପ୍ରତ୍ୟକ୍ଷ କରୁଥିଲା ବେଳେ ଏ ବର୍ଷର ସଜବାଜ ଯେପରି ହୋଇ ଉଠୁଛି ଶୋଚନୀୟ ଭାବରେ ପ୍ରାଣହୀନ ।

ଶୁଦ୍ଧୋଧନ ଭାବିଲେ, ତାଙ୍କ ଶୈଶବ ଓ କୈଶୋର ଅବସ୍ଥାରେ ଗାଁର ଆର୍ଥିକ ଅବସ୍ଥା ଯାହା ଥିଲା ବରଂ ସେ ଅବସ୍ଥାରେ ଅନେକାଂଶରେ କ୍ରମୋନ୍ନତି ଘଟିଛି । ଶିକ୍ଷା, ସଂସ୍କୃତି ଓ ଅନ୍ଧବିଶ୍ୱାସରେ କୁଣ୍ଡୁକୁଞ୍ଚୁ ହୋଇ ପଛରେ ପଡ଼ିଥିବା ତାଙ୍କ ଗାଁ ଆଜି ହୋଇଛି ବହୁଭାବରେ ଅଗ୍ରଗାମୀ । କେତେ କୁଲଘର ଉଠିଯାଇ ତା' ଜାଗାରେ ଇଟା ସୁରକିର ଘର ଠିଆ ହେଲେଣି । କେତେ ଘରୁ ବିଜୁଳି ଆଲୋକର ଉଜ୍ଜ୍ୱଳ ଶ୍ୱେତାଭ ଛଟା ଛୁଟିଆସୁଛି ଗାଁ ରାସ୍ତାକୁ ।

ଏ ସବୁ ସତ୍ତ୍ୱେ, ଗାଁର ରଜପର୍ବ, ପାରମ୍ପରିକ ସଂପ୍ରୀତି ଓ ଶୁଭେଚ୍ଛା ଆଜି କାହିଁକି ହୋଇ ଯାଉଛି ଶୂନ୍ୟତାରେ ଭରପୂର ? କେଉଁ ଅପଦେବତାର ଅଭିଶାପରେ ଗାଁର ସେଇ ପାରମ୍ପରିକ ଆନନ୍ଦ, ଉଲ୍ଲାସ ଓ ଚଳଚଞ୍ଚଳ ଆଜି ହୋଇଯାଇଛି ଅପହୃତ ?

ଶୁଦ୍ଧୋଧନଙ୍କର ମନେ ପଡ଼ିଲା ତାଙ୍କ ପିଲାଦିନର କଥା । ଏଇ ତ ବାଆଲିଶବର୍ଷ ! ରଜ ପାଇଁ ଗାଁରେ ତିନିଦିନଧରି ଚାଲେ ନାଟକ ଅଭିନୟ । ତା' ପୂର୍ବରୁ ଏଇ ସଜବାଜ ଦିନ ହୁଏ ଷ୍ଟେଜ ରିହରସାଲ । ସେଦିନ ସଂଧ୍ୟାପରେ, ସେ ଓ ତାଙ୍କର ସାଙ୍ଗ ସାଥିମାନେ କେହି ଆଉ ଘରକୁ ଫେରନ୍ତି ନାହିଁ । ଗାଆଁର ସବୁ ଉତ୍ସାହୀ ଟୋକା ମିଳିମିଶି ଯେଉଁଠି ଭୋଜି ଭାତ କରନ୍ତି । ପ୍ରତି ଘରର ସ୍ତ୍ରୀଲୋକେ ସଜବାଜର ସଜପିଠା ଓ ନାନା ଜାତିର ଭଜା ପଠାଇ ଦିଅନ୍ତି ଗାଁ ସ୍କୁଲର ଲମ୍ବା ହଲକୁ ଯେଉଁଠି କୋଡ଼ିଏ ତିରିଶି ଜଣ ଯୁବକ ଏକା ସାଙ୍ଗରେ ମିଳିମିଶି ନାଟକ ଅଭିନୟ ଲାଗି ପ୍ରସ୍ତୁତ ହେଉଥାନ୍ତି ।

ସେ ଦିନ ପିଠା ଓ ଭଜାଖାଇ ଆହା ! ସେମାନେ କେତେ ଖୁସୀ ହେଉ ନଥିଲେ । ସେ ସବୁ ଦିନଗୁଡ଼ିକ ଥିଲା କେତେ ସ୍ୱଚ୍ଛନ୍ଦ ଓ ପ୍ରାଣମୟ ! ଉଚ୍ଛଳ ଓ ପ୍ରାଣପୂର୍ଣ୍ଣ ଉଲ୍ଲାସରେ ଜୀବନ କଟାଇ ଦେବାରେ ଥିଲା ସେସବୁ ଦିନଗୁଡ଼ିକର ଲକ୍ଷ୍ୟ ।

ଶୁଦ୍ଧୋଧନଙ୍କର ସେ ସବୁ କଥା ମନେପଡ଼ି ଏକ ଅବ୍ୟକ୍ତ ବେଦନାରେ ସେ ଯେପରି ଭାଙ୍ଗି ପଡ଼ିଲେ । ଅତୀତର ସେଇ ସମସ୍ତ ସ୍ମୃତି-ସ୍ନିଗ୍ଧ ଫେନିଳ ବନ୍ୟା, ବର୍ତ୍ତମାନ ବର୍ଷସର କେଉଁ ଏକ ମରୁନଦୀର ବାଲୁକା ଶଯ୍ୟାରେ ମରି ଯେପରି ହଜିଯାଇଛି । ଆଉ ହୁଏତ ସେହି ବନ୍ୟାର ଫଲଗୁ ପୁଞ୍ଜୀଭୂତ ବାଲୁକା-ଶଯ୍ୟାକୁ ଭିଜାଇ ଭିଜାଇ ଉଦ୍ଭାସିତ ହେବନାହିଁ ।

କାହାନ୍ତି ସେଦିନର ସଖା, ବନ୍ଧୁ ଓ ସୋଦରମାନେ ? କିଏ ଆଜି ପ୍ରାଥମିକ ସ୍କୁଲର ଶିକ୍ଷକଟିଏ, ସରକାରୀ ଛାପାଖାନାର କିରାଣିଟିଏ, କଲିକତାର କେଉଁ ଏକ ବହୁ ବର୍ଣ୍ଣିତ ପାନଦୋକାନର ମାଲିକଟିଏ ଅଥବା ଆଉ କିଏ ହୋଇଛି ଗାଁ ସରକାରର ଶକ୍ତିଶାଳୀ ମଙ୍ଗୁଆଳଟିଏ ।

ଏଭଳିଆ ଅତୀତର ବନ୍ଧୁମାନେ ଗାଁରେ କେବେ କେବେ ଭେଟହେଲେ କଦାଚିତ ଦେଖାହୁଅନ୍ତି ଏବଂ କେଇ ମାମୁଲି ସୁଖ ଦୁଃଖ ହୋଇ ପୁଣି ଲାଗିଯାଆନ୍ତି ନିଜ ନିଜ ଧନ୍ଦାରେ । କିନ୍ତୁ କାହିଁ ସେହି ଉଚ୍ଛଳ ଓ ଉଦବେଳ ଅନ୍ତରଙ୍ଗତା ? ଆନନ୍ଦରେ, ପୁଲକରେ, ଗୀତଗାଇବାର ନାଟକ କରିବାର ଓ ଖୁବ ରାତ ଉଜାଗର ହୋଇ କୁଆଁର ଉତ୍ସବ ପାଳିବାର ଅନ୍ତଃସ୍ଥଳ ବ୍ୟାକୁଳତା ?

ଶୁଦ୍ଧୋଧନ ଦାଣ୍ଡ ବାରଣ୍ଡା ବେଞ୍ଚରେ ବସିଛନ୍ତି । ତାଙ୍କ ସାମ୍ନାଦେଇ ଯିବା ଆସିବା କରୁଛନ୍ତି ଅନେକ ଲୋକ । ମାତ୍ର କାହିଁ କାହାର ଭିତରେ ସଜବାଜର ସେଇ ସ୍ୱତଃସ୍ଫୁର୍ତ୍ତ ପ୍ରାଣଚଞ୍ଚଳ ଆବେଗ ତ ସ୍ପନ୍ଦିତ ହେଉନାହିଁ !

ସେଦିନ ଏକାକୀ ଶୁଦ୍ଧୋଧନ ସେଠାରେ ବସି ବସି ରାତ ଏଗାରଟା ବାଜିଲା । କିନ୍ତୁ ସଜବାଜର କୌଣସି ସଂକେତ ସେ ପାଇଲେ ନାହିଁ । ଶେଷରେ ସେ ଫେରି ଆସିଲେ ଘର ଭିତରକୁ ଶୋଇବାକୁ ।

ତା' ପରଦିନ ରାତି ପାହି ସକାଳ ହେଲା । ଶୁଦ୍ଧୋଧନ ବିଛଣାରେ ଶୋଇ ଅଳସ ଭାଙ୍ଗୁଥିଲେ । ବିଛଣାରେ ଶୋଇ ରହିଥିବା ବେଳେ ହଠାତ ସେ ସଚେତନ ହେଲେ ସେ ଆଜି ରଜ ।

ସେ ତାଙ୍କର ଶୈଶବର ସେଇ ଉଷ୍ମ କ୍ରୀଡା ନେଇ, ଧ୍ୟାନ ହେଲେ ଖୁବ ନୀରବରେ । ପ୍ରଥମ ରଜର ଶୀତ ସକାଳକୁ ବିଦୀର୍ଣ୍ଣ କରି ଗାଁ ଭିତର ପଡ଼ିଆରୁ କାହିଁ ଭାସି ଆସୁ ନାହିଁ ତ ସେଇ ଯୋଡ଼ି ନାଗସ୍ୱର ଧ୍ୱନି ! ତା' ସହିତ ଭାସି ଆସୁନାହିଁ ପିଲାମାନଙ୍କର ସେଇ ଦମଦେଇ ଓ ଉଚ୍ଛଳିତ ହୋ ଧ୍ୱନି !!

ଶୁଦ୍ଧୋଧନଙ୍କ ଶୈଶବର ରଜ, ଉତ୍ତୀର୍ଣ୍ଣ ଯୌବନର ମଧ୍ୟାହ୍ନରେ ଯେପରି ଜଳପୋଡ଼ି ଧ୍ୱଂସ ହୋଇଯାଇଛି । ମାତ୍ର ତାହାର ଧୂସର ସ୍ମୃତି ଏବେ ମଧ୍ୟ ଜୀବିତ ରହିଛି ତାଙ୍କ ଚେତନାରେ ଦୂର ଆକାଶରେ ନିଷ୍ପ୍ରଭ ହୋଇ ଜଳୁଥିବା ଏକ ନିଃସଙ୍ଗ ତାରକା ପରି ।

ସେଦିନ ପହିଲି ରଜ ଅତିବାହିତ ହେଲା । ସେ ଭୁଲିଲେ ତାଁ ତମାମ । କେତେ କେତେ ଖେଳର ସେଇସବୁ ଅସ୍ପଷ୍ଟ ଧ୍ୱନି ଯାହା ତାଙ୍କ ସ୍ମୃତିରେ ତରଳି ତରଳି ବାଷ୍ପ ହୋଇ ରହିଥିଲା ଓ ତାହା ତାଙ୍କ ଗାଁର ଉଦ୍ଧବେଳନ ଶୂନ୍ୟତା ମଧ୍ୟରେ କୁଆଡ଼େ ମିଳାଇଗଲା ଧୂଆଁ ହୋଇ ।

ଗାଁ ବାଉ ଡାଳରେ ଆହା ! କେତେ ଦୋଳିର ଝୁଲଣ !! ପ୍ରତି ଘରର ବାଡ଼ପଟେ କେଉଁ ଏକ ଡେଙ୍ଗା ପିଜୁଳୀ, ତେନ୍ତୁଳି ଗଛରେ ଅଥବା ଦୁଇଗୋଟି ନାଠଗଛ ମଧ୍ୟରେ ଲାଗିଥାଏ ବାଉଁଶ ଦୋଳି, କେତେ ପ୍ରିୟ ବୋହୂ, ସେଇ ଦୋଳାରେ ଝୁଲିଝୁଲି ରଜର ମେଘଡଙ୍କା ଆକାଶକୁ ଛୁଇଁଯାଆନ୍ତି ଏବଂ ପୁଣି ଗାଇ ବସନ୍ତି କେତେ ଗୀତ !

ଶୁଦ୍ଧୋଧନଙ୍କ ସ୍ମୃତିର ଉପତ୍ୟକାରେ ସେଇ ଗୀତର ଏକ ବିସ୍ମୃତ ସ୍ୱର ଏବେ ମଧ୍ୟ ଅନୁରଣିତ କରି ଉଠୁଛି ! ପଟା ଝୁଲି ବଟ ଭଟ.... ମୋ ଭାଇ ମୁଣ୍ଡରେ ସୁନା ମୁକୁଟ, ଦଶୁଆଉ ଝଟ ଝଟ .

ଶୁଦ୍ଧୋଧନ ଭାବିଲେ, ଗାଁର ରଜ ଉତ୍ସବ ଅନେକ ଦିନ ହେଲା ଆତ୍ମହତ୍ୟା କରିଛି । କାହିଁ ସବୁ ସେଇ ଆନନ୍ଦ ଉତ୍ସବ ଓ ନିମନ୍ତ୍ରଣର ବାଆନା ? ଆଜି ସେଇ ରଜର ଶବମାନେ ଗାଁକୁ କରିଦେଇଛନ୍ତି ନିର୍ଜନ ଓ ନିସ୍ପନ୍ଦ ।

ଶୁଦ୍ଧୋଧନ ଫେରି ଆସିଲେ ଘରକୁ ! ସେଦିନ ରାତି ଅନେକ ହେଲା । କଳାବତୀ ଓ ପିଲାମାନେ କେତେ ବେଳୁ ଶୋଇଗଲେଣି । ବାପା, ବୋଉ ଓ ସୁକସରୀ ଶୋଇଯାଇଛନ୍ତି ନିଘୋଡ଼ ନିଦରେ ।

ଶୁଦ୍ଧୋଧନଙ୍କୁ ନିଦ ହେଲାନାହିଁ । ଶୈଶବ ଓ କୈଶୋରର ରଜ, ପୁର୍ବତଃ ବଡ଼ବାପା, ତାଙ୍କର କଠୋର ଅନୁଶାସନ, ସାଙ୍ଗସାଥି, କେତେ କେତେ ଖେଳ, ଭୁମା, ତାସ, ଲୁଡ଼ୋ ଓ ମାଂସଭୋଜି ସବୁ ଯେପରି ତାଙ୍କର ଚେତନାକୁ ଏକଯୋଗରେ ଦଳିମକ୍ଥି ବ୍ୟସ୍ତ ବିବ୍ରତ କରିଦେଲା, ସେ ଧୀରେ ଧୀରେ ଘରୁ ବାହାରି ଦାଣ୍ଡକୁ ଚାଲି ଆସିଲେ ଏବଂ କବାଟଟିକୁ ବାହାର ପଟୁ ଆଉଜାଇ ଆଣିଲେ ।

ବାହାରେ ବେଶ ଅନ୍ଧାର । କିନ୍ତୁ ଆକାଶରେ ଜଳୁଥିଲା ଅସଂଖ୍ୟ ତାରକାର ବତ୍ତି, ଶୁଦ୍ଧୋଧନ ଦାଣ୍ଡରୁ ବାହାରି ଗାଁ ରାସ୍ତାକୁ ଆସିଲେ ଏବଂ ସେଇଠାରୁ ଉଦ୍ଦେଶ୍ୟହୀନ ଭାବରେ ଚାଲିଲେ ତଳର ପଡ଼ିଆକୁ, ଯେଉଁ ରାସ୍ତା, ସେଇଠାରୁ ଲମ୍ବି ଯାଇଛି ନଈକୂଳ ପର୍ଯ୍ୟନ୍ତ ।

ଗାଁ ରାସ୍ତା ଶୂନ୍‌ଶାନ ! ସମସ୍ତେ ଶୋଇ ଗଲେଣି । ଶୁଦ୍ଧୋଧନ ଚାଲି ଚାଲି ଏକାକୀ ତଳର ପଡ଼ିଆରେ ପହଞ୍ଚିଲେ ।

ଏଇ ସେ ତଳର ପଡ଼ିଆ । ଏହାର ପ୍ରତ୍ୟେକ ଧୂଳିକଣା ତାଙ୍କ ଶୈଶବର ସମସ୍ତ ସ୍ମୃତିକୁ ଯେପରି ବହନ କରିଛି, ତା'ର ମାଟି, ଗୋଡ଼ି, ଘାସ ଓ କଣ୍ଟାବୁଦା ସବୁ ଯେପରି ତାଙ୍କର ନିତାନ୍ତ ଆପଣାର । ଏଇ ଯେଉଁ ଝଙ୍କାଳିଆ ବରଗଛ, ଯାହାର ଜଟାଳୁଚି ଲମ୍ବି ଯାଇଛି ପ୍ରାୟ ଦୁଇ ଏକର ପରିମିତ ଜମିଉପରେ ସେ ବି ଥିଲା ତାଙ୍କର ନିହାତି ପରିଚିତ ।

ଶୁଦ୍ଧୋଧନ ଧୀରେ ଧୀରେ ସେଇ ଗଛ ଆଡ଼କୁ ମୁହାଁଇଲେ ।

ତାଙ୍କର ସ୍ମୃତିର ସିଲେଟ୍‌ରେ ପୁଣି ଲେଖି ହୋଇଗଲା ଶୈଶବର ସବୁକଥା । ଏଇ ବରଗଛ ତଳେ ପାଣ୍ଡି କଟାଯାଇ କେତେ କେତେ ଖେଳ ହୁଏ । ସେ ବି ଖେଳୁଥିଲେ, ଏଇ ଯେଉଁ କଣ୍ଟାବୁଦା, ଅପର ପକ୍ଷର ଖେଳାଳୀମାନଙ୍କୁ ଛନ୍ଦଛନ୍ଦ କରିଦେଇ ସେ ଡେଇଁ ପଡ଼ୁଥିଲେ ହନୁମାନ ପରି ତାହା ଉପରକୁ । କଣ୍ଟାବୁଦାର ଆରପଟେ କାନ କୋଳି ଜଣ୍ଡାର ଇତସ୍ତତଃ ଅରଣ୍ୟ । ଗୋଡ଼ ଛିଡ଼ିଯାଏ, ରକ୍ତ ଝରେ, ତଥାପି ଖେଳର ସମାପ୍ତି ଘଟେ ନାହିଁ ।

ଶୁଦ୍ଧୋଧନ ସେଇ ପୁରୁଣା ବରଗଛ ମୂଳେ ବସି ପଡ଼ିଲେ । ତାଙ୍କର ମନେଅଛି, ତିନିଦିନ ରଜ ଉତ୍ସବ ସରିଗଲେ, ପିଲାଦିନେ ଏଇ ବରଗଛ ମୂଳକୁ ଏକାକୀ ଆସି ସେ ଭାରି ଦୁଃଖ କରନ୍ତି । ତାଙ୍କର କାହିଁକି ହୁଏ, ଏଇ ରଜ ପର୍ବଟା ମାସ ମାସ ଧରି ଲାଗି ରହନ୍ତା କି ! ମାସ ହାୟ୍ ! ତିନୋଟି ଦିନର ଉତ୍ସବ, ଚାହିଁ ଚାହିଁ ଚାଲିଯାଏ ଓ ତାଙ୍କ ଶୈଶବର ଚେତନାରେ ଲେଖି ଦେଇଯାଏ କେତେ ହାଲ୍‌କା ବେଦନାର ସ୍ୱାକ୍ଷର ।

ଶୁଦ୍ଧୋଧନ ଧୀରରେ ସେଇ ଝଙ୍କାଳିଆ ବରଗଛର ଚାରିପଟେ ବୁଲିଲେ । ଆଜି ସଂଧ୍ୟାବେଳେ ସାମାନ୍ୟ ଅଳ୍ପରେ ବର୍ଷା ହୋଇଥିବାରୁ ଗଛ ଚାରିପଟେ କେଉଁଠି କେମିତି ମଳେ ମଳେ ପାଣି ଜମିଯାଇଛି । ସେଇ ଗଛରୁ ନାଲି ନାଲି ବରଫଳ ତଳେ ପଡ଼ି ସେସବୁ ଫଳମାନଙ୍କରୁ ଗୋଟାଏ ମିଠା ମହୁଆ ବାସ୍ନା ନିର୍ଗତ ହେଉଛି ।

ଶୁଦ୍ଧୋଧନ ଧୀରରେ ଗୋଟାଏ ବରଫଳ ସଂଗ୍ରହ କରି ହାତରେ ଧରିଲେ । ତାଙ୍କ ଶୈଶବର ଚେତନାରେ ଆଷାଢ଼ର ପ୍ରଥମ ବର୍ଷା ଓ ଫଟା ବରଫଳର ମିଶା ମିଶି ଗନ୍ଧ ଯାହା ଉଭେଇଯାଇଥିଲା ବିସ୍ମୃତ ହୋଇ, ସେଦିନ ଧୀରରେ ତାହା ଯେପରି ତଡ଼ବଧୁର ହୋଇ ଉଠିଲା । ସେ ଫେରି ଆସିଲେ ସେଇ ଗଛ ପାଖରୁ ଅପ୍ରମିତ ମାନସିକ ବେଦନା ନେଇ ।

ଶୁଦ୍ଧୋଧନ ଗାଁ ରାସ୍ତାକୁ ଫେରି ଆସିଲେ । ଚାଲିଛନ୍ତି ନିଃଶବ୍ଦ ଗତିରେ ସେ, ଏକାକୀ । ଧୋବା ସାହି ପାରି ହୋଇ ସେ ଆସିଲେ ପଣ୍ଡା ସାହିକୁ । ପଣ୍ଡାଙ୍କ ବାଡ଼ିରେ ସେଇ ଯେଉଁ ବିଶାଳ ତେନ୍ତୁଳି ଗଛ, ସେ ଗଛଟି ଅଛି କି ନାହିଁ ! ଶୁଦ୍ଧୋଧନ ସେଇଠାରେ ଥମକି ଠିଆ ହୋଇ ସେହି ଗଛଟିକୁ ନିରୀକ୍ଷଣ କଲେ ।

କ୍ଷୁଦ୍ରାକ୍ଷୁଦ୍ର ଗଛମାନଙ୍କର ଗହଳ ଶ୍ୟାମଳିମା ଭିତରେ, ରାତିର ଅନ୍ଧାରରେ ସେଇ ନିର୍ଦ୍ଦିଷ୍ଟ ଗଛଟିକୁ ଠାବ କରିବା ତାଙ୍କ ପକ୍ଷରେ ହୋଇଗଲା କଷ୍ଟକର । ପଚିଶି ବର୍ଷ ତଳର କଥା, ସେଇ ବିଶାଳ ଗଛରେ ଲାଗୁଥିଲା ଦୁଇଟି ଦୋଳି, ପଣ୍ଡା ଘରର ଦୁଇଟି ଝିଅ ଆଗ ପଛ ହୋଇ ଖେଳୁଥିଲେ ।

ବଡ଼ ମନୋରମ, ତାଙ୍କଠାରୁ ଦୁଇଟି ଶ୍ରେଣୀ ଉପରେ ଓ ପାଠ ଉଲୋକମା ପଢ଼ୁଥିଲା ତାଙ୍କ ସାଙ୍ଗରେ, ଗାଁ ହାଇସ୍କୁଲରେ । ସେମାନଙ୍କର ବାପା ଓ ମା ଥିଲେ ଓଃ କେଡ଼େ ସ୍ନେହଶୀଳ ! ପ୍ରତି ଭଳରେ ସେମାନେ ଶୁଦ୍ଧୋଧନଙ୍କୁ ଡ଼ାକାଇ ପଠାନ୍ତି ଓ ପେଟପୁରା ଖାଇବାକୁ ଦେଇ କେତେ ଗପ କରନ୍ତି ! ଖାଇସାରିଲା ପରେ ମନାନାନୀ ତାଙ୍କୁ ଡ଼ାକି ନେଇ ଦୋଳି ଖେଳାଉଥିଲା । ଆଉ ଉଲୋକମା ତାଙ୍କୁ ଦୋଳିରେ ବସାଇ ଝୁଲାଉଥିଲା ।

ମନା ନାନୀ, ତା'ର ଗୋରା ତକ୍ ତକ୍ ଚେହେରା, ଢଳଢଳ ଦେହ ଓ ଦୁଇଟି ଝଣ ଝଣ ଆଖି ତାଙ୍କ କୈଶୋର ଜୀବନର ଅନନ୍ତିତ ସ୍ୱପ୍ନ ସବୁକୁ ଯେପରି କରି ଦେଉଥିଲା କେମିତିର ମୋହାଚ୍ଛନ୍ନ !

ଅନେକ ବର୍ଷ ହେଲାଣି । ସେମାନଙ୍କ ଖବର ସେ ରଖିନାହାନ୍ତି । ଏଇ ତ ତାଙ୍କସର ! ମଉଷା ମାଉଷୀ ହୁଏତ ବେଶୀ ବୁଢ଼ା ବୁଢ଼ୀ ହୋଇ ଯାଇଥିବେ । ମନାନାନୀ ଓ ଉଲ ବିବାହ କରିଯାଇଥିଲେ ସେ କଲେଜରେ ପଢ଼ୁଥିଲା ବେଳେ ସେମାନଙ୍କ ସହିତ ଆଉ ଦେଖା ହେବ ? ସେମାନେ ନାହାନ୍ତି, ସେଦିନର ରଙ୍ଗ ଦୋଳି ନାହିଁ ।

ଶୁଦ୍ଧୋଧନଙ୍କର ମନେପଡ଼ିଲା ମନାନାନୀର କଥା । ଗ୍ରୀଷ୍ମ ଛୁଟିପାଇଁ ସ୍କୁଲ ବନ୍ଦହେଲେ, କେତେ ଉତ୍ଫୁଲ୍ଲ କଣ୍ଠ ନ ଖରାବେଳେ ମନାନାନୀ ଆସି ପହଞ୍ଚିଯିବ ତାଙ୍କ ପାଖରେ । ଫିସ୍ ଫିସ୍ କରି କ'ଣ ତାଙ୍କ କାନରେ କହି ହାକନଏ ତାଙ୍କ ଘରକୁ । ଗ୍ରୀଷ୍ମର ନିଛାଟିଆ ଖରାବେଳେ ତାଙ୍କ ଘରେ ସମସ୍ତେ ଶୋଇପଡ଼ନ୍ତି । ମନାନାନୀ ପାଖରେ ବସାଇ ପିଜୁଳି ଖାଇବାକୁ ଦିଏ । କେତେ ପୁଣି କଥା କହେ ! ଗଳ୍ପ ଓ ଉପନ୍ୟାସର କେତେ ପ୍ରେମ-ଜଡ଼ିତ କାହାଣୀ କହି ତାଙ୍କ କୈଶୋରର ଚେତନାକୁ ସେ କରି ଦେଉଥିଲା କେତେ ଉଦ୍ଦୀପ୍ତ ।

ସେତେବେଳେ ମନାନାନୀର ସେଇସବୁ ଏକାନ୍ତ ଭାବର ଅର୍ଥକୁ ଶୁଦ୍ଧୋଧନ କିଛି ବୁଝି ପାରୁ ନ ଥିଲେ । ସେ ଯାହା କହୁଥିଲା, ସେ ତାହା କରୁଥିଲେ । କାରଣ ମନାନାନୀ ତାଙ୍କର ଉପର କ୍ଲାସରେ ପଢ଼ୁଥିଲା ।

ଯେତେବେଳେ ଶୁଦ୍ଧୋଧନ ଏଇ ଭକର ସମ୍ପର୍କରେ ସଚେତନ ହେଲେ, ସେତେବେଳେ ମନାନାନୀ ତାହିଁକି କେଜାଣି ଦୂରଛଡ଼ା ହୋଇ ରହିବାକୁ ଚେଷ୍ଟାକଲା, ମାତ୍ର ତା'ସତ୍ତ୍ୱେ ମନାନାନୀ ପ୍ରତି ରହିଗଲା ତାଙ୍କର ଏକ ଦୁର୍ବାର ଆକର୍ଷଣ ।

ପଣ୍ଡାଘର ଧଡ଼ା ଡେଇଁ, ଗୁହାଳି ଦରେ କରେ ଏକ ଅଣଓସାରିଆ ରାସ୍ତାରେ ଶୁଦ୍ଧୋଧନ ଚାଲିଲେ ତାଙ୍କ ବାଡ଼ିଆଡ଼କୁ । ବିଶାଳ ଏକ ବାଗ । ବାଗର ଶେଷ ପ୍ରାନ୍ତରେ ପୁରୁଣା କାଳର ସେଇ ଗଣ୍ଡିର ପୋଖରୀ ଓ ତା' ପାଖରେ ସେଇ ଝଙ୍କାଳିଆ ତେନ୍ତୁଳିଗଛ, ଏବେ ମଧ୍ୟ ସେଇମିତି ଠିଆ ହୋଇଛି, ଶାଖା, ପ୍ରଶାଖାରେ କଣ୍ଟାଗଛ ଓ ପଚ ଖଡ଼ିଲରେ ପରିପୂର୍ଣ୍ଣ ତେନ୍ତୁଳି ଗଛଟି ଠିଆ ହୋଇ ବହିଥିବ ତାଙ୍କ ଶୈଶବ ଓ କୈଶୋରର ଏକ କଣାଣଙ୍କୁଣ୍ଡ ପଣ ।

ଗଛ ମୂଳେ ଠିଆ ହୋଇଛି ଆଦର୍ଶ ଏକ
ଶୁଦ୍ଧୋଧନ ଅଟେଇଲେ ସେଇ ତେନ୍ତୁଳିଗଛ ଆଡ଼େ । ନାରୀମୂର୍ତ୍ତି ! ଝୁମ୍ ଝୁମ୍ ଦୀର୍ଘ କେଶ, ଦେହରେ ଜିନ୍ ଜିନ୍ ଶାଢ଼ୀ । କାଚ ଝୁମ୍ ଝୁମ୍ ହେଉଛି ।

ଶୁଦ୍ଧୋଧନଙ୍କ ବିହ୍ୱଳତା ମଧ୍ୟରେ ମନାନାନୀର ଚେହେରା ହଠାତ୍ ଯେପରି ପ୍ରତିଫଳିତ ହୋଇ ଉଠିଲା । ସେ ହେଲେ ସଚେତ ! ଠିକ୍ ଦେଖାଯାଉଛି ମନାନାନୀର ଚେହେରା ପରି ।

ଅନେକ ବର୍ଷପରେ ମନାନାନୀ ଆଜି ଆସିଛି ତାଙ୍କ ବାଗକୁ ନିର୍ଜନ ସ୍ଥଳରେ ଦୋଳି ଖେଳିବାକୁ । ଆଃ—ମନାନାନୀ ! ତୁ କେବଳ ବୁଝି ପାରିଲୁ ଶୁଦ୍ଧୋଧନର ମନକଥା ।

ଶୁଭବୋଧନ ତେନ୍ତୁଳଗଛ ଆଡ଼କୁ ଏକ ପ୍ରମତ୍ତ ଆବେଗରେ ଆଗେଇ ଚାଲିଲେ । ସେ ଯେତିକି ନିକଟତର ହେଉଥିଲେ, ମଠାଧୀଶର ଉପସ୍ଥିତି ସମ୍ପର୍କରେ ତାଙ୍କର ଧାରଣା ସେତିକି ସ୍ପଷ୍ଟତର ହେଉଥିଲା ।

ଶୁଭବୋଧନ ତେନ୍ତୁଳଗଛ ନିକଟରେ ପହଞ୍ଚିଲେ । ଦେଖିଲେ ସେଇ ନାରୀ ମୂର୍ତ୍ତିଟି କ୍ରମଶଃ ଅନ୍ତର୍ଦ୍ଧାନ ହୋଇଯାଇଛି ଏବଂ ଗଛର ଅନତି ଦୂରରେ ପୋଖରୀ କୂଳର ଏକ ଆମ୍ବଗଛ ପାଖରେ ଠିଆ ହୋଇଛି । ଶୁଭବୋଧନ ଭାବ ବିହ୍ୱଳ ହୋଇ ସେଇ ତେନ୍ତୁଳ ଗଛଟିକୁ କୋଳାଗ୍ରତ କଲେ ।

ପୋଖରୀ କୂଳର ଆଉ ଗୋଟିଏ ଗଛ ପାଖରେ ଯେଉଁ ନାରୀ ମୂର୍ତ୍ତିଟି କିଛି ସମୟ ପୂର୍ବରୁ ଦେଖାଯାଉଥିଲା, ସେ ଆଉ ଦେଖା ଗଲାନାହିଁ, ରାତିର ଅନ୍ଧାରରେ ସେ ଛାୟା ମୂର୍ତ୍ତି କ୍ରମଶଃ ଅଦୃଶ୍ୟ ହୋଇଗଲା ।

ଶୁଭବୋଧନ ଚାହିଁଲେ ଗଛଟିକୁ । କାହିଁ ରଜ ଦୋଳି ? କାହିଁ ମନାନାଗ ? ତିଲୋତ୍ତମା ? କାହିଁ ସେହି ରୌଦ୍ରଦଗ୍ଧ ଅପସ୍ୱପ୍ନ ? ଶୁଭବୋଧନଙ୍କ ଭାବ ବିହ୍ୱଳତା ହଠାତ୍ ଯେପରି ମହମ ପରି ତରଳିବାକୁ ଲାଗିଲା ।

ଶୁଭବୋଧନ କ୍ରମଶଃ ସଚେତନ ହେଲେ । ନିଃଶବ୍ଦ ରାତିର ଅନ୍ଧକାର ମଧ୍ୟରେ ସିଏ ଏଇ ପଣ୍ଡାଙ୍କର ବାଡ଼ିକୁ ଆସିଛନ୍ତି, ସେ କ'ଣ ସେଇ କୈଶୋରର ଶୁଭବୋଧନ ସ୍ୱସ୍ଥ ?

ଅତୀତର ସ୍ମୃତିକୁ ବାହୁନି ବାହୁନି ଓ ତାହାର ବଦରକୁ ଖୋଲିବା ପାଇଁ ଆଜି ଯେ ଏଇ ନିଶୁନ୍ ଅନ୍ଧାର ରାତିରେ ପଣ୍ଡାଙ୍କର ବାଡ଼ିକୁ ବାୟା ପାଗଳଙ୍କ ପରି ଚାଲି ଆସିଛନ୍ତି ଗୋଟାଏ ମୂଲ୍ୟହୀନ ତେନ୍ତୁଳଗଛ ପାଖକୁ, ସେ କ'ଣ ଅତୀତର ସେଇ ଅନାମଧେୟ, ଅପରିପକ୍ୱ କିଶୋର ଶୁଭବୋଧନ ? ?

ଶୁଭବୋଧନ ଆହୁରି ସଚେତନ ହେବାକୁ ଲାଗିଲେ ।

ଏକ ଭୟଙ୍କର ରାତିରେ, ସେ ଏକୁଟିଆ କିପରି ଯେ ଏତେବାଟ ଚାଲିଆସିଲେ ତାହା ଜାଣି ତାଙ୍କୁ ବିସ୍ମୟ ଲାଗିଲା । ଏଇ ବିସ୍ମୟ ସାଙ୍ଗକୁ ତାଙ୍କର ଆଶଙ୍କା ହେଲା ଯେ ଯଦି ଏତେବେଳେ କେହି ତାଙ୍କୁ ଏ ବାଡ଼ିରେ ଏଇ ଅବସ୍ଥାରେ ଦେଖିନିଏ, ତାଙ୍କ ସମ୍ପର୍କରେ କ'ଣ ସେ ଧାରଣା କରିବେ ? ହୁଏତ ତସ୍କର, ଲମ୍ପଟ । ଅଥବା ପାଗଳ ବୋଲି କହିବାକୁ କେହି ଦ୍ୱିଧା ବୋଧ କରିବେ ନାହିଁ ।

ଶୁଭବୋଧନ ନିଜକୁ ବଡ଼ ଅସହାୟବୋଧ କଲେ ସେଠାରେ, ସେ କିପରି ଏଇ ବାଡ଼ିରୁ ନିଷ୍କ୍ରାନ୍ତ ହେବେ, ତାଙ୍କୁ ବୁଦ୍ଧି ଦିଶିଲା ନାହିଁ । ସେ ଖୁବ୍ ଦ୍ରୁତ ଗତିରେ ଯେଉଁ ଅଣଓସାରିଆ ରାସ୍ତାଦେଇ ସେଇ ବାଡ଼ିକୁ ଆସିଥିଲେ, ସେଇ ରାସ୍ତାଦେଇ ଏକ ନିଃଶ୍ୱାସକେ ଚାଲି ଆସିଲେ ଗାଁ ରାସ୍ତାକୁ । ଖାଲି ଗୋଡ଼ରେ ଏକ ଭାବ-ବିଳାସରେ ମୋହାଚ୍ଛନ୍ନ ହୋଇ ଘରୁ ଚାଲି ଆସିଥିବାରୁ, ବାଡ଼ିର ଅରମା ଅଭଣା ସ୍ଥାନମାନଙ୍କରେ ପାଦପଡ଼ି, ସେଥିରୁ ରକ୍ତ ବାହାରୁଥିବାର ସେ ଲକ୍ଷ୍ୟକଲେ ।

ଗାଁ ରାସ୍ତାରେ ପହଞ୍ଚିଲା ବେଳକୁ ତାଙ୍କ ଦେହରୁ ଝାଳ ବୋହିଯାଉଥିଲା ଗମ ଗମ ହୋଇ, ସେ ସେଇ ଅନ୍ଧାରରେ ଖୁବ୍ ଦ୍ରୁତ ଗତିରେ ଚାଲୁଥିଲେ ତାଙ୍କ ଘରକୁ ।

ପଛରେ ପଡ଼ି ରହୁଥିଲେ ରଜ ଉତ୍ସବର ଶବ୍ଦମାନେ ।

ସମ୍ପାଦକ-କଲ୍ୟାଣୀ
ଭୁବନେଶ୍ୱର





ଗାଳ୍ପିକ କୃଷ୍ଣପ୍ରସାଦଙ୍କ ସମ୍ପର୍କରେ କିଛି ଆଲୋଚନା କରିବାକୁ ଯିବା ସମୟରେ ମୁଖ୍ୟତଃ ତାଙ୍କ ସ୍ରଷ୍ଟାର ଚରମ ସାର୍ଥକତାର ସାକ୍ଷ୍ୟ ବହନ କରୁଥିବା 'ଭୃଗୁସଂହିତା' କ୍ଷୁଦ୍ର ଗଳ୍ପ ସଂକଳନ ଉପରେ ଦୃଷ୍ଟି ନିବଦ୍ଧ ହୁଏ । ଏଥିରେ ମୁଖ୍ୟତଃ ସାଂପ୍ରତିକ କାଳର ବିଭିନ୍ନ ସମସ୍ୟାପ୍ରତି ଗାଳ୍ପିକଙ୍କର ସ୍ୱଭାବେଗ ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ଗ୍ରହଣ କରିଛି ଯାହା କି ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ଅନବଦ୍ୟ କୃତି ।

ସାଂପ୍ରତିକ କଥା ସାହିତ୍ୟରେ ସାମାଜିକ ତଥା ବିଭିନ୍ନ ମାନସିକ ଏବଂ ସାଂସ୍କୃତିକ ଅବବୋଧର ମୂଲ୍ୟାଙ୍କନ ସ୍ୱରୂପ 'ଭୃଗୁ ସଂହିତା' ବାସ୍ତବବାଦୀ ସାହିତ୍ୟାଦର୍ଶର ନାନ୍ଦନିକ ମୂଲ୍ୟବୋଧ ପ୍ରତି ଅତି ମାତ୍ରାରେ ସଚେତନ ଅଟେ । ଉପସ୍ଥିତ ସାମାଜିକ ପରିସ୍ଥିତିରେ ବ୍ୟକ୍ତି ଏବଂ ପରିବେଶର ମୁହାଁମୁହିଁ ଅବସ୍ଥା ତଥା ଏକ ଆଦର୍ଶ ସମାଜ ଓ ମନୋବୃତ୍ତି ଗଢ଼ିବାପାଇଁ ବାତାବରଣ ସୃଷ୍ଟି କରିବା ଗାଳ୍ପିକଙ୍କର ମୁଖ୍ୟଲକ୍ଷ୍ୟ ହୋଇଛି ଯାହା ଗଳ୍ପଗୁଡ଼ିକୁ କାହାଣୀ ପ୍ରଧାନ କରିଛି ।

ପାଶ୍ଚାତ୍ୟ ସାହିତ୍ୟରେ ହେମିଂୱେ, ଷ୍ଟେନ୍‌ବେକ୍, ସାର୍ତ୍ରେ, କାମ୍ୟୁ ଏକଦା ଜୀବନର ଏକ ସଙ୍କଟମୟ ମୁହୂର୍ତ୍ତରେ ତଥା ସାଂସ୍କୃତିକ ବିପର୍ଯ୍ୟସ୍ତ ସମୟରେ ନୂତନ ସମାଜର ଆଶା ପୋଷଣ କରିଥିଲେ କଥା ସାହିତ୍ୟ ମାଧ୍ୟମରେ । ବୋଧହୁଏ ଏକ ନୂତନ ସଂସ୍କୃତି ସଂପନ୍ନ ସମାଜ ଗଢ଼ିବା ତଥା ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ସୃଷ୍ଟି କରିବା ଏକ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏ ମନୋବୃତ୍ତି କୃଷ୍ଣପ୍ରସାଦଙ୍କ ଗଳ୍ପରେ ଅଛି; ତଥାପି ବିଭିନ୍ନ ସାମାଜିକ ଚରିତ୍ରକୁ ଉପସ୍ଥିତ ରାଜନୈତିକ, ଅର୍ଥନୈତିକ ତଥା ସାଂସ୍କୃତିକ ମୋଡ଼ ଦେଇ ଗଳ୍ପ ରଚନା କରିଛନ୍ତି ଏବଂ ଚରିତ୍ର ସୃଷ୍ଟି କରିଛନ୍ତି ଯେ ଅତ୍ୟଧିକ ମାତ୍ରା ସ୍ଲୋଗାନ ଧର୍ମୀ ବା ଏକ committed ତନ୍ତ୍ରର ବାହକ ହୋଇ ନାହାନ୍ତି । ଏହା ସବୁଠାରୁ ତାଙ୍କର ଏକ

ବିଶିଷ୍ଟ ଗୁଣ । ତାଙ୍କର ଗଳ୍ପର ଆରମ୍ଭ, ଶେଷ ଏବଂ ବିକାଶ ପ୍ରତି ସେ ସବୁଗଳ୍ପରେ ସଚେତନ ମନେ ହୁଅନ୍ତି । ଏ କ୍ଷେତ୍ରରେ ତାଙ୍କ ସମୟର ଅନ୍ୟାନ୍ୟ ଗାଳ୍ପିକମାନଙ୍କୁ ଆଲୋଚନା କଲେ ସେମାନଙ୍କ ଗଳ୍ପର ଶେଷ ଭାଗ ପ୍ରତି ବୈରାଗ୍ୟ ହେବାକୁ ପଡ଼େ । ବିଶେଷତଃ ପାଠକ ମନକୁ ସେମାନେ ଏତେ ମାତ୍ରାରେ ଆଲୋଚନା ଏବଂ ବର୍ଣ୍ଣନା ଦ୍ୱାରା ଭାରାକ୍ରାନ୍ତ କରି ଦିଅନ୍ତି, ଯାହାଫଳରେ ପାଠକର ରୁଚି କମିଯାଏ ।

ମୁଖ୍ୟତଃ କ୍ଷୁଦ୍ରଗଳ୍ପ ସବୁବେଳେ ଗୋଟାଏ ସମସ୍ୟାକୁ ଉପସ୍ଥାପିତ କରେ ଓ ନିର୍ଦ୍ଦିଷ୍ଟ ଭାବାବେଗର ନିର୍ଦ୍ଦିଷ୍ଟ 'ମୁଡ୍'କୁ ପ୍ରକାଶ କରେ । ଏ ପ୍ରକାଶ କାଳମଧ୍ୟରେ ଲେଖକ ବର୍ଣ୍ଣନା, ଚରିତ୍ର ତଥା ଚରିତ୍ର-ମାନଙ୍କର ମାନସିକ ବିକାଶ ଦରକାର ସେଠିକରୁ ଅଧିକା ଗୋଟାଏ ବାକ୍ୟ ମଧ୍ୟ କହେନାହିଁ । ସେ କ୍ଷେତ୍ରରେ ଆଜିର ପ୍ରତ୍ୟେକ ମୁହୂର୍ତ୍ତ ସମସ୍ୟାସଙ୍କୁଳତାର ସମସ୍ତ ହୋଇ ଗାଳ୍ପିକ ସାମନାରେ ଛିଡ଼ା ହୁଏ ଓ ଏ ସମୟର ମଣିଷମାନେ ବିଭିନ୍ନ ସମସ୍ୟାରେ ଏତେ ଦୂର ଜର୍ଜରିତ ଯେ ତାଙ୍କର ଭାଷା ସଂକ୍ଷିପ୍ତ ହେବାପାଇଁ ବାଧ୍ୟ । ଲେଖକ ଡାଇଲଗ୍ ଇତ୍ୟାଦି ଦେବାବେଳେ ଅତି ସଂଯମତା ଅବଲମ୍ବନ କରାଯାଇ ଭାଷାକୁ ନୂତନ ଭାବରେ ପରିମାର୍ଜିତ ଶୈଳୀରେ ବ୍ୟବହାର କରାଯାଏ ।

ଏହାଛଡ଼ା ଗଳ୍ପର ଆରମ୍ଭ ଓ ଶେଷ ସ୍ଥିରଲକ୍ଷ ନ ହୋଇ କାହାଣୀ ନାଟକୀୟତା ଅବଲମ୍ବନ କରିବାକୁ ମଧ୍ୟ ବାଧ୍ୟ ମନେ ହୁଏ । ଏ କ୍ଷେତ୍ରରେ କୌଣସି ଭୂମିକା ବା ପରିଚୟ ପ୍ରକାଶ ନକରି ଯେ କୌଣସି ସ୍ଥଳରୁ ଗଳ୍ପ ଆରମ୍ଭ ହୁଏ ଓ ପରିସମାପ୍ତି ସେଭଳି ଆକସ୍ମିକ ହୁଏ । ଏ କଳା ଅବଲମ୍ବନରେ ଗାଳ୍ପିକ କୃଷ୍ଣ ପ୍ରସାଦ ସିଦ୍ଧହସ୍ତ ମନେ ହୁଅନ୍ତି ।

'କ୍ଷିପ୍ର ସଂହିତା'ର କ୍ଷୁଦ୍ର ଗଳ୍ପମାନଙ୍କ ମଧ୍ୟରେ 'ପରମହଂସ', 'ମୁଖା', 'ଜଣେ ଗୁରୁଙ୍କ ଉଦୟ', 'ଏ ଭୂଇଁ', 'ଶାମୁକା' ଇତ୍ୟାଦି ଗଳ୍ପର ଆରମ୍ଭ, ଶେଷ ଓ ବିକାଶଧାରାକୁ ଦେଖିଲେ ତାଙ୍କ ଗଳ୍ପ ମଣ୍ଡଳର ବିଶିଷ୍ଟତା ସ୍ୱତଃ ଜଣାପଡ଼େ । 'ମୁଖା' ଗଳ୍ପ ୧୯୬୩ରେ ଲେଖାଯାଇଥିବା ଗାଳ୍ପିକଙ୍କ ଏକ ଚରମ ସାର୍ଥକ ଗଳ୍ପ । ପାଶ୍ଚାତ୍ୟ ଧର୍ମୀ 'ଜନ୍' ଏବଂ 'ମାର୍ଲିନ୍' ଚରିତ୍ରକୁ ଆଣି ସେ ଯେପରି ଭାବେ ଆମ ସଂସ୍କୃତିର ଦନ୍ତଦାନ୍ତି ଉପରେ ମୁହାଁ ମୁହିଁ କରି ଦେଇଛନ୍ତି ସେ ବର୍ଣ୍ଣନା ନିଶ୍ଚିତ ଭାବେ ତାଙ୍କ ଶିଳ୍ପୀ ଜୀବନର ମହନୀୟତାକୁ ଅଭିଜ୍ଞତାସହ ଆମ ସାମନାରେ ସ୍ପଷ୍ଟ କରାଇଦିଏ । ଗୋପବନ୍ଧୁ ମୂର୍ତ୍ତି ମଧ୍ୟର ଯେଉଁ ଭାବର କଳ୍ପନା କରାଯାଇଛି ତା କେବଳ ଅଭିନବଭାବେ ନୁହଁ ବରଂ ଆକ୍‌ସନ୍ ସହ ଏକ ଶରୀର ଆକ୍ଷେପଲବ୍ଧିର ସମ୍ପୂର୍ଣ୍ଣତା ତଥା ଚୈତନ୍ୟ ଓ ଆତ୍ମ ବିଶ୍ୱାସର ଫଳତ ପରିପ୍ରକାଶ ଦ୍ୱାରା ବାସ୍ତବାୟିତ ହୋଇଛି ଯେତେବେଳେ 'ଜନ୍' ଚରିତ୍ର ସମୁଦ୍ର କୂଳରେ କୁଷ୍ଠ ରୋଗିଣୀଟିକୁ ଦଖାଇବାକୁ ଧାଇଁ ଯାଇଛି ଏକ ବିକାରଗ୍ରସ୍ତ ମାନସର ତାଡ଼ନାରେ । ଏ ଗଳ୍ପର ଆରମ୍ଭ ଯେପରି ଆକସ୍ମିକ ଭାବେ ପ୍ରସ୍ତୁତ କରାଯାଇଛି ସେପରି ପରିସମାପ୍ତି ମଧ୍ୟ ଏକ ଚରମ ନାଟକୀୟତାର କ୍ଲାଇମାକ୍ସ ମଧ୍ୟରେ କରାଯାଇଛି । ଏ କ୍ଷେତ୍ରରେ ଡଃ କୃଷ୍ଣପ୍ରସାଦଙ୍କ ଭାଷାକୁ ବର୍ଣ୍ଣନା କରିବାକୁ ଯାଇ ସାର୍ତ୍ରଙ୍କ ଉକ୍ତି ଉଦ୍ଧାର କରିବାକୁ ମନେହୁଏ ।

"He considers words as a trap to catch a fleeting reality rather than as indicators which throw him out of himself into the midst of things".

ଡଃ କୃଷ୍ଣ ପ୍ରସାଦଙ୍କ ଆଲୋଚିତ ଗଳ୍ପ ମଧ୍ୟରେ ଜିହ୍ୱାଳ ଅନ୍ୟ ଏକ ସାର୍ଥକ ଗଳ୍ପ । 'କେଶବ' ଚରିତ୍ରରେ ସେ ଆମ ସମୟର ଏକ ଜଟିଳ ସମସ୍ୟା ତଥା ବନ୍ୟା ବାତ୍ୟା ସମୟରେ କି ପରି କେତେଜଣ ଶୁଦ୍ଧ ଚମତ୍କାର ଭାବେ ଦାନଧର୍ମ ନାମରେ ନିଜର ଲାଭ ହାସଲ କରନ୍ତି ତା ବର୍ଣ୍ଣନା କରିଛନ୍ତି । ତାଙ୍କର ଗଳ୍ପମାନଙ୍କୁ ମୁଖ୍ୟତଃ ପରିବର୍ତ୍ତିତ ସାମାଜିକ ତଥା ପାରିବାରିକ ଏବଂ ସାଂସ୍କୃତିକ ବାସ୍ତବାୟନର ଦର୍ପଣ ବୋଲି କୁହାଯାଇପାରେ । ଗଳ୍ପଗୁଡ଼ିକୁ ସେ କେବଳ ନିଜ ଦେଶ ମଧ୍ୟରେ ସୀମାବଦ୍ଧ ନ ରଖି ଆନ୍ତର୍ଜାତିକ ପୃଷ୍ଠଭୂମିରେ ମଧ୍ୟ ଲେଖିଛନ୍ତି । ବିଶେଷତଃ କାନଡ଼ା ଏବଂ ସେଠାକାର ସଂସ୍କୃତିକୁ ନେଇ ଲେଖାଯାଇଥିବା ଗଳ୍ପ, ଯଥା—'ପ୍ରବୋଧ', 'ମାଛ' ଇତ୍ୟାଦି ଖୁବ୍ ଭଲ ହୋଇଛି ।

"ପ୍ରକୋଷ୍ଠ" ଗଳ୍ପର 'ଜେନେଟ୍' କଥା ଆଲୋଚନା କଲାବେଳେ ସ୍ୱରାଜ୍ୟ ନାମ୍ନୀ 'ଜସ୍ନା'ର ମନସ୍ତାତ୍ତ୍ୱିକ ଆକ୍ରମଣ ସ୍ୱଭାବେ ଅନ୍ୟ ଜଣେ ବିଦେଶୀ ନାରୀକୁ କିପରି ଆକୃଷ୍ଟ କରିଛି ତା ଲକ୍ଷ୍ୟ କରିବାର କଥା । ସ୍ୱରାଜ୍ୟ ନାରୀର ସନ୍ଦେହୀ ମନ ସବୁବେଳେ, ସବୁସ୍ଥାନରେ କିପରି ତା ସ୍ୱାମୀକୁ ସନ୍ଦେହ କରୁଥାଏ ତା 'ଜେନେଟ୍' ସମ୍ପର୍କରେ ମତାମତ ଦେଲାବେଳେ ସ୍ପଷ୍ଟ ଜଣାପଡ଼େ । ଏଠାରେ ଦୁଇ ସଂସ୍କୃତିର ଗୋଟିଏ ନିରପେକ୍ଷ comparison ଦିଆଯାଇଛି । 'ପରମହଂସ' ଗଳ୍ପରେ ଭାରତର ଏକ ନୂତନ ଅର୍ଥନୈତିକ ତଥା ସାଂସ୍କୃତିକ ସମସ୍ୟାର ଦୃଶ୍ୟପଟର ବର୍ଣ୍ଣନା ଅତି ଚମତ୍କାର ମନେହୁଏ । ରାମକୃଷ୍ଣଙ୍କ ପ୍ରତିମୂର୍ତ୍ତି ଭାଙ୍ଗିବା ବେଳେ 'ଜ୍ୟୋତି'ର ଚରିତ୍ରରେ ସେ ମୁଖ୍ୟତଃ ଆଧୁନିକ ଯୁବକମାନଙ୍କର ପରମ୍ପରାଗତ ସଂସ୍କୃତିପ୍ରତି ମୋହଭଙ୍ଗର ଏକ shocking effect ଦେଇଛନ୍ତି । ମୁଖ୍ୟତଃ 'ଜ୍ୟୋତି' ଚରିତ୍ରରେ ଆଧୁନିକ 'ରେବେଲ୍'ର ସମସ୍ତ ଗୁଣ ଦେଖାଇ ଦିଆଯାଇଛି । ଗୋଟିଏ ଚଳି ଆସୁଥିବା ମୂଲ୍ୟବୋଧ, ସମାଜ ବ୍ୟବସ୍ଥାପ୍ରତି ଆର୍ଥିକ ଜର୍ଜରିତ ମନର ଦୋଦୁଲ୍ୟ ଅବସ୍ଥା ଏକ ଅସହାୟ ସମସ୍ୟାର ନଦୀମୁହାଣୀରେ ଛିଡ଼ା ହୋଇ କୁଆଡ଼େ ଯିବ, କ'ଣ କରିବ କିଛି ଠିକ୍ କରିପାରୁନି । 'ଜ୍ୟୋତି' ଏଠାରେ ଏକ Metaphysical Rebel ହୋଇ ଛିଡ଼ା ହୋଇଛି । କାମ୍ୟୁଙ୍କ ମତରେ "Not every value leads to rebellion, but every rebellion tacitly invokes a value." ଏ କ୍ଷେତ୍ରରେ ବିବେକଙ୍କ "Divinity of Man"ର କଥା ମଧ୍ୟ ମନକୁ ଆସେ ।

ମୁଖ୍ୟତଃ ଗାଳ୍ପିକ କୃଷ୍ଣପ୍ରସାଦଙ୍କ ଗଳ୍ପରେ ସମସ୍ୟା ସମ୍ବଳିତ ସମାଜ ପ୍ରତି ଯେଉଁ କୌଣସି ନିର୍ଦ୍ଦିଷ୍ଟ ସନ୍ଦେଶ ନାହିଁ; ତଥାପି ଇଙ୍ଗିତ ଅଛି ପରୋକ୍ଷଭାବେ । ଏହା ତାଙ୍କ ଶିଳ୍ପୀ ମନର ନିରପେକ୍ଷ ଭୂମିକା ଅଟେ । କାରଣ ଶିଳ୍ପୀ ସବୁବେଳେ borderline ସ୍ଥିର କରିବାପାଇଁ ଇଙ୍ଗିତ ଦିଏ; ନିର୍ମାଣ କରିବା ଦାୟିତ୍ୱ ସମାଜର କର୍ତ୍ତାମାନଙ୍କ ଉପରେ । ତାଙ୍କର ଅନ୍ୟ ଏକ ଶୈଳୀ ହେଲା ଗଳ୍ପରେ 'cataloguing' କରିବାର ଶୈଳୀ । ଏ ଶୈଳୀ ମୁଖ୍ୟତଃ ବିଭିନ୍ନ ଉପସ୍ଥିତ ସମସ୍ୟାର ବିବୃତିକୁ କାହାଣୀରେ ଦେଇ କାହାଣୀକୁ ବାସ୍ତବ ଘଟଣା ସହ ସଂଯୋଜିତ କରେ । 'ଲଗ୍ନ ସଂହିତା' ଗଳ୍ପ ଏକ ଆଧୁନିକ ମଧ୍ୟବିତ୍ତ ପରିବାରର ଗୃହିଣୀ ଶିକ୍ଷିତା ସୁଚରିତାଙ୍କ ମନୋବୃତ୍ତି ସହ ଆଧୁନିକ ଚଳଣୀ ଏବଂ ଜ୍ୟୋତିଷ ଶାସ୍ତ୍ରରେ ବିଶ୍ୱାସ ରଖୁଥିବା ପଡ଼ୋଶୀ ବ୍ୟବସାୟୀ ଭେଙ୍କଟିର ହାବଭାବକୁ ନେଇ ରଚିତ । ଏ ଗଳ୍ପରେ ଆଧୁନିକ ମନର ଅବଚେତନରେ ଥିବା ମୌଳିକ ପ୍ରବୃତ୍ତିକୁ ଅବତାରଣା କରାଯାଇଛି । 'ଚକ୍ଷୁପରୀକ୍ଷା' ଗଳ୍ପରେ ପୁରୁଣା ପ୍ରେମର Flash back ମାଧ୍ୟମରେ ସ୍ତ୍ରୀ ଓ ପୁରୁଷ ସମ୍ପର୍କ ଏବଂ ଦ୍ୱନ୍ଦ୍ୱ, ନାରୀର ଆଦର୍ଶ ଏବଂ ସେଥିସହ ସଂଗ୍ରାମରତ ବର୍ତ୍ତମାନର ସଂସ୍କୃତିର ଏକ ଚମତ୍କାର ମନୋବିଶ୍ଳେଷଣ କରାଯାଇଛି ।

ମନେହୁଏ ଗାଳ୍ପିକ କୃଷ୍ଣପ୍ରସାଦ ଆଧୁନିକ ମନ ଏବଂ ସେଥିସହ ସଂପୃକ୍ତ ପରିବେଶରେ ବର୍ଣ୍ଣନା ଦେବାରେ ଅତି ସିଦ୍ଧହସ୍ତ । ତାଙ୍କ ଡାଇଲଗ୍ ଅତି ସଂକ୍ଷିପ୍ତ ହେଲେ ମଧ୍ୟ ତାର ଯଥାଯଥ ଉପସ୍ଥାପନା ତାଙ୍କ ଗଳ୍ପ ଲେଖନର ଅନ୍ୟ ଏକ ଚମତ୍କାର କଳା । କେବଳ ଶୈଳୀକୁ ଅବଲମ୍ବନ କରି ଲେଖିବା ଅଥବା କେବଳ ଘଟଣା ବହୁଳ କରି କାହାଣୀ ଲେଖିବାରେ କୃଷ୍ଣପ୍ରସାଦ ପକ୍ଷପାତୀ ନଥିବାରୁ ତାଙ୍କ କାହାଣୀମାନ ପାଠକମାନଙ୍କ ମନକୁ ସ୍ପର୍ଶ କରିବାରେ ଆଗ୍ରହ ସୃଷ୍ଟି କରେ । ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଗାଳ୍ପିକ କୃଷ୍ଣପ୍ରସାଦ ଗଳ୍ପ ରଚନାବେଳେ କଳାତ୍ମକ ଦୃଷ୍ଟିଭଙ୍ଗୀର ସମସ୍ତ ବାସ୍ତବ ପ୍ରତି ବିଶେଷ ଭାବେ ସଚେତନ ଓ ସମୟର ଦାବୀ ସହ ପରମ୍ପରାର ସମଯୋଜିତା କରିବାରେ ସିଦ୍ଧହସ୍ତ ।

ନଂ ୧୮, ପ୍ରଶାସକ ବ୍ଲକ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,
ବ୍ରହ୍ମପୁର– ୭

# ଅନନ୍ୟ ପ୍ରତିଭା ସମାଜସେବୀ

ମହାପାତ୍ର ନୀଳମଣି ସାହୁ

ବଲାଙ୍ଗୀର ସହରର ବରପାଲି ପଡ଼ାରେ ତାଙ୍କ ଘର । ବୟସ ୧୭-୧୮ ହେବ । ବାପା ମାଆ ଅଛନ୍ତି । ଦୁଇଟି ଭାଇ—ଗୋଟିଏ ଭଉଣୀ । ଜମିବାଡ଼ି ଆଦୌ ନାହିଁ କହିଲେ ଚଳେ । ବଲାଙ୍ଗୀର କଲେଜରେ ପାଠ ପଢ଼ୁଥିଲେ, ପାଠ ପଢ଼ିବାକୁ ସମ୍ବଳ ଅଭାବ ହେଲା—ଆଉ ମଧ୍ୟ କଲେଜ ପାଠରେ ମୁଣ୍ଡ ସେମିତି ପଶିଲା ନାହିଁ । କିନ୍ତୁ ଫୁଟବଲ ଖେଳରେ ବହୁ ନାଁ ଡାକ ହୋଇଥାଏ । ଆଉ ମଧ୍ୟ ସହରରେ ନାଟକ କ୍ଲବ ବା ସାହିତ୍ୟ ସଭା ସମିତିରେ ଜଣେ ତତ୍ପର ସ୍ୱେଚ୍ଛାସେବକ ହିସାବରେ ସମସ୍ତଙ୍କର ଶ୍ରଦ୍ଧା ଅର୍ଜନ କରନ୍ତି । ମାତ୍ର ଏଣେ ଘରେ କ୍ରମଶଃ ବଞ୍ଚିବାର ସମସ୍ୟା ତୀବ୍ର ହୋଇ ଉଠିଲା । ଆଉ ଆନନ୍ଦ ବାବୁଙ୍କ ଖେଳୁଆଡ଼ ଜୀବନ ହୋଇ ଉଠିଲା ନିରାନନ୍ଦମୟ ।

କଲେଜର ପାଠ ପଢ଼ାରେ ଡୋରି ଦେଇ ସମବାୟ ବ୍ୟାଙ୍କର ଜଣେ ନିମ୍ନ ବେତନ ଶ୍ରେଣୀ କର୍ମଚାରୀର ଦାୟିତ୍ୱ ନେଲେ ଶ୍ରୀ ଆନନ୍ଦ ଚନ୍ଦ୍ର ପୁରୋହିତ । କିଛିଦିନ ଯାହି ତାହି ଚଳିଲା । ମାତ୍ର ପାଞ୍ଚପ୍ରାଣୀ କୁଟୁମ୍ବଙ୍କ ପେଟକୁ ସେତିକି ଉପାର୍ଜନ ଦାନା ଯୋଗାଇ ପାରିଲା ନାହିଁ—ପିଠିକି ମଧ୍ୟ ଲୁଗା ଯୋଗାଇ ପାରିଲା ନାହିଁ । ଇତି ମଧ୍ୟରେ ପୁଣି ଆନନ୍ଦ ବାବୁ ହାତକୁ ଦି'ହାତ ହୋଇ ଯାଇଥିଲେ । ମୁଣ୍ଡରେ ଭାଲେଣୀ ପଶିଲା । କେମିତି ଏ ସଂସାର ଚଳିବ ? ବାପା ଥିଲେ ଅବକାଶ ପ୍ରାପ୍ତ ଜଣେ କନେଷ୍ଟବଲ ।

ଗୋଟାଏ ବଡ଼ କଥା ହେଉଛି—ଆନନ୍ଦ ବାବୁ ହେଉଛନ୍ତି ଖୁବ୍ ମେଳାପୀ—ଆଉ ସାମାଜିକ ଯୁବକ । ସମାଜର ବିଭିନ୍ନ କ୍ରିୟାକଳାପ ଅନୁଷ୍ଠାନାଦି ସଙ୍ଗେ ଜଡ଼ିତ ଥିବାରୁ ବହୁ ଲୋକଙ୍କ ସଙ୍ଗେ ତାଙ୍କର ପରିଚୟ ଥିଲା । ନିଜର ଭଲପଣିଆରେ ବହୁ ବ୍ୟକ୍ତିଙ୍କର ସେ ଆସ୍ଥା ଓ ସ୍ନେହଭାଜନ ମଧ୍ୟ ହୋଇ

ପାଉଥିଲେ । ଦେଖିବାକୁ ପତଳା—ମାତ୍ର ଖୁବ୍ ଚଟପଟ—ପରିଚ୍ଛନ୍ନ ଭଦ୍ରପୋଷାକ, ଲମ୍ବାକାନ୍ଥ, ଲମ୍ବାବାଳ—ତାଙ୍କୁ ଖୁବ୍ ମାନେ । ହୃଦୟଟି ଖୁବ୍ ସରଳ, ଟିକିଏ ପାଚି ଲାଗିଲେ ବି କଥାବାର୍ତ୍ତା ଖୁବ୍ ମଧୁର, ଭଦ୍ର ଆଉ ହୃଦ୍ୟ । ଦେଖିଲେ ଖୁସୀ ଲାଗେ । ସଂପର୍କ ଯୋଡ଼ିବାକୁ ମନ ହୁଏ । ଆଳାପ ଜମାଇବାକୁ ଆଗ୍ରହ ବଢ଼େ । ସ୍ମୃହାଣୀରୁ ମନେ ହେବ, ସତେ କି ସେ ଆପଣଙ୍କ ବନ୍ଧୁଟି ଭଳି କରୁଛନ୍ତି !

ବଲାଙ୍ଗୀର ଜିଲ୍ଲା ସାହିତ୍ୟ ସମ୍ମିଳନୀରେ ଯୋଗ ଦେଇ—ସହରରେ ଲୋକ ସଂପର୍କ ବିଭାଗର କାର୍ଯ୍ୟକଳାପ ଦେଖିବାକୁ ଓ ସରକାରଙ୍କର ବିଭିନ୍ନ ଲୋକ ହିତକର ଯୋଜନାରୁ ସାଧାରଣ ଲୋକେ କିପରି ଉପକୃତ ହେଉଛନ୍ତି—ତାହା ଦେଖିବାକୁ ଜିଲ୍ଲା ଲୋକ ସମ୍ପର୍କ ଅଫିସରଙ୍କ ସଙ୍ଗେ ସହର ଓ ସହରତଳି ଅଞ୍ଚଳମାନଙ୍କୁ ଗଲି । ସେହି ଅବସରରେ ସେ ମୋତେ ଆନନ୍ଦ ବାବୁଙ୍କ ସଙ୍ଗେ ଦେଖାକରାଇ ଦେଲେ । ସେ କହିଲେ—ଏହି ସଫଳ ଯୁବକଟି ସାଙ୍ଗେ କଥାବାର୍ତ୍ତା କରି ବୁଝନ୍ତୁ ତାଙ୍କ ସଫଳତାର ରହସ୍ୟ । ଏପ୍ରିଲ୍ ମାସରେ ବି ବଲାଙ୍ଗୀର ସହର ତାତି ଯାଇଥିଲା । ଦିନ ବାରଟା ବାଜିଲାଣି । କ୍ଲାନ୍ତି ଲାଗୁଥାଏ । ମାତ୍ର ଆନନ୍ଦ ବାବୁଙ୍କୁ ଦେଖିବା ମାତ୍ରେ ଆଉ ଗୁଡ଼ି ପାରିଲି ନାହିଁ । କିଛି ସମୟ ଏଣୁ ତେଣୁ ଗଳ୍ପରେ କଟିବା ପରେ ମୁଁ ପଚାରି ଦେଲି—ବର୍ତ୍ତମାନ ଆପଣ କ'ଣ କେମିତି ଚଳେଇଛନ୍ତି ।



ନିଜର ମିନିବସ୍ 'ଡୋଜ' ପାଖରେ ଛିଡ଼ା ହୋଇଛନ୍ତି ଆନନ୍ଦ ପୁରୋହିତ ଓ ତାଙ୍କ ପାଖରେ ଅଛନ୍ତି ବଲାଙ୍ଗୀର ଜିଲ୍ଲା ଲୋକ ସମ୍ପର୍କ ଅଫିସର ଶ୍ରୀ ନାରାୟଣ ଦାଶ

ଗୋଟାଏ ମିନିବସ୍ ଚଳାଉଛି ଆଜ୍ଞା ! ବର୍ଷେରୁ ଅଧିକ ହୋଇଗଲା । ଭଲ ରୋଜଗାର ହେଉଛି । ମୋର ମନ ଖୁସୀ ଅଛି ।

ସେଇଠୁ ମୁଁ ତାଙ୍କୁ ବହୁ କଥା ପଚାରି ବସିଲି । ସେ ମଧ୍ୟ ସବୁ ପ୍ରଶ୍ନର ଉତ୍ତର ଧୀରେ ଧୀରେ କହି ଯାଉଥିଲେ । ସେ କହିଲେ—ଶେଷକୁ ଡୋଜ୍ ବୋଲି ଗୋଟାଏ ଧରଣର ମିନିବସ୍ ଚଳାଇବା ଲାଗି ସ୍ଥିର କଲି । ସ୍କୁ ଡା' ସାଙ୍ଗରେ ମିଶି ଗାଡ଼ି ଡ୍ରାଇଭିଂଟା ଶିଖିଥାଏ । ଗାଡ଼ି ଚଳାଇବାର ଗୋଟାଏ ମଜା ପାଉଥିଲି । ଦିନସାରା ପଚାଶ ମାଇଲ୍ ବେଗରେ ଏଠୁ ସେଠିକି ଗଡ଼ କରୁ କରୁ ଟଙ୍କା ରୋଜଗାର ମଧ୍ୟ କରିବି । ଡ୍ରାଇଭିଂ ଲାଇସେନ୍ସଟିଏ କରି "ଶିକ୍ଷିତ ଡ୍ରାଇଭର ଲୋନ୍ ସ୍କିମ୍‌ରୁ" ଗାଡ଼ି ଋଣ

ଲାଗି ଦରଖାସ୍ତ କଲି । ଦରଖାସ୍ତ କଲି ଷ୍ଟେଟ୍ ଫାଇନାନ୍ସିଆଲ କର୍ପୋରେସନ୍, କଟକଙ୍କ ନିକଟରେ । ଦୁଇଶହ ଜଣ ଦରଖାସ୍ତକାରୀ ଥିଲେ । ଏ ଋଣ ପାଇଲେ ମାତ୍ର ୫୫ ଜଣ । ଭଗବାନ୍ ଭରସା—ସେଇ ୫୫ ଜଣଙ୍କ ଭିତରେ ମୁଁ ଥିଲି । ଗୋଟିଏ ମିନିବସ୍ ଚ୍ୟାସିର ସମୁଦାୟ ଦାମ୍ ମିଶି ଏକଲକ୍ଷ କୋଡ଼ିଏ ହଜାର ଟଙ୍କା ପଡ଼ିବ । ଋଣ ମିଳିଲା ମାତ୍ର ଶତକଡ଼ା ୮୫ ଟଙ୍କା । ଆଗରୁ ଦରଖାସ୍ତ କରିଥିଲି ଷ୍ଟେଟ୍ ଟ୍ରାନ୍ସପୋର୍ଟ ଅଥରିଟି, କଟକଙ୍କ ପାଖକୁ ଗାଡ଼ି କିଣା ଋଣ ଲାଗି । ସେଠୁ ମଧ୍ୟ ମିଳିଲା ଶତକଡ଼ା ଦଶଟଙ୍କା । ଏତେକ ମିଶି ହେଲା ଶତକଡ଼ା ୯୫ ଟଙ୍କା ଋଣ । ତଥାପି ମଧ୍ୟ ଆଉ କିଛି ଟଙ୍କା ମୋତେ ଯୋଗାଡ଼ କରିବାକୁ ପଡ଼ିବ । ମୋ ପାଖେ ତ ଖଣ୍ଡା ଦାଣ୍ଡି । ତଥାପି ମୋର ବନ୍ଧୁମାନେ ଦୟାକରି ଅବଶିଷ୍ଟ ଟଙ୍କା ମୋତେ ଧାର ସୂତ୍ରରେ ସାହାଯ୍ୟ କଲେ । ବନ୍ଧୁମାନେ ମୋର କାନ୍ଧରେ ହାତ ପକାଇ କହିଲେ—ତୁ ବାହାଦୁର ଆଦ୍‌ମୀ ଅଛୁ ଆନନ୍ଦ ! ଲକ୍ଷେ ଟଙ୍କା ଯୋଗାଡ଼ କରିଦେଲୁ—ଆଉ ଆମେ ଏତେକ ଟଙ୍କା ତୋତେ ଦେଇ ପାରିବୁ ନାହିଁ ?

ସତକଥା ! ଆନନ୍ଦ ବାବୁ ସେ ଖାଲି ଦରଖାସ୍ତ ଦୁଇଖଣ୍ଡି ଲେଖି ବଲାଙ୍ଗୀରରେ ବସି ରହିଲେ ବା ଶୋଇଗଲେ ଏବଂ ଲକ୍ଷେ ଟଙ୍କା ଋଣ ତାଙ୍କ ପାଖେ ମନିଅର୍ଡର ଯୋଗେ ପହଞ୍ଚିଗଲା—ତା' ନୁହେଁ । ସେଦିନ ଖାଇବେଳେ ଆନନ୍ଦ ବାବୁ କପାଳର ଝାଳ ରୁମାଲରେ ପୋଛି ପୋଛି କହୁଥାନ୍ତି—ଆପଣ ବିଶ୍ୱାସ କରିବେନି ଆଜ୍ଞା ! ବଲାଙ୍ଗୀର-ସମ୍ବଲପୁର-କଟକ-ଭୁବନେଶ୍ୱର ଦଉଡ଼ି ଦଉଡ଼ି ମୁଁ କି ଯନ୍ତ୍ରଣା ନ ଭୋଗିଛି !! ବେଳେ ବେଳେ ଖାଇନାହିଁ—ଶୋଇନାହିଁ । ଅଫିସରମାନଙ୍କର ପ୍ରଶାସନିକ ବ୍ୟବସ୍ଥାରେ ଫାଇଲ୍ ପତ୍ର କାମ ଯେମିତି ହୁଏ—ପୁଣି ଆପଣଙ୍କ ସରକାରୀ କର୍ମଚାରୀମାନେ ଯେମିତି ତତ୍ପର—ଜାଣନ୍ତି ଆଜ୍ଞା ! ମୁଁ ଗୋଟାଏ ଜୀବନ ପଣ ଉଦ୍ୟମରେ ଲାଗି ପଡ଼ିଲି ବୋଲି ପାଇଲି । ଏଠୁ ସେଠିକି, ସେଠୁ ଏଠିକି—ଏ ଟେବୁଲରୁ ତା' ପାଖକୁ—ତା' ପାଖରୁ ଏ ପାଖକୁ । ଋଣ ନୁହେଁ ମାତ୍ର ପୁଣ୍ଡିଛି—ଦଉଡ଼ା ଦଉଡ଼ି କରିଛି । ତା' ପରେ ଯାଇ ଈଶ୍ୱର ମୋ ଡାକ ଶୁଣିଲେ ।

୧୯୭୫ ମସିହା ଜାନୁଆରୀ ମାସରେ ଆନନ୍ଦ ବାବୁ ପର୍ଯ୍ୟାପ୍ତ ଟଙ୍କା ଯୋଗାଡ଼ କରିଦେଲେ । ତା' ପରେ ପୁଣି ଗାଡ଼ି କିଣିବା ଲାଗି କ'ଣ କମ୍ ଧାଁ ଧପଡ଼ ! ବଲାଙ୍ଗୀରରୁ କଟକ—କଟକରୁ କଲିକତା । ଶେଷରେ ମାର୍ଚ୍ଚ ମାସରେ ଏଇ ଟୋଲ୍ ଗାଡ଼ିଟା କିଣାହେଲା । କଟକ ପଟ୍ଟନାୟକ କମ୍ପାନୀରୁ ଆଗ କିଣା ହେଲା, ଗାଡ଼ିର ଚେସିସ୍‌ଟା । ତା'ପରେ ଚେସିସ୍‌ଟାକୁ ନେଇ ଯିବାକୁ ହେଲା କଲିକତା । କଲିକତାରେ ତିଆରି ହେଲା ଗାଡ଼ିର ବଡ଼ିଟା ।

ଗାଡ଼ିଟି ସଂପୂର୍ଣ୍ଣ ତିଆରି ହୋଇ ଯେଉଁଦିନ ବଲାଙ୍ଗୀରରେ ପହଞ୍ଚିଲା—ଆଃ ! ସେଦିନ କି ଆନନ୍ଦ ! ଗାଡ଼ିଟିକୁ ଦେଖି ଆନନ୍ଦ ବାବୁଙ୍କ ବାପା, ମାଆ, ଭାଇ ଭଉଣୀ ଓ ସ୍ତ୍ରୀ ସମସ୍ତେ ଆନନ୍ଦ ଉଚ୍ଛ୍ୱାସରେ କାନ୍ଦି ପକାଇଲେ । ସମସ୍ତେ ଗାଡ଼ିଟିକୁ ଆଉଁସି ଲାଗିଲେ ଯେପରିକି ଲକ୍ଷେ ଟଙ୍କାର ଗାଈଟିଏ ଘରକୁ ଆସିଛି ଅବା । ଯେପରିକି ଲକ୍ଷ୍ମୀ ଠାକୁରାଣୀ ଏଇ ଗାଡ଼ି ରୂପରେ ଆସିଛନ୍ତି ଘରକୁ ! ଧୋବ ଫରଫର ରୂପ—ଯେପରିକି ନବୋଢ଼ା କନ୍ୟାଟିଏ ! ଆନନ୍ଦ ବାବୁଙ୍କ ଛୋଟ ଛୋଟ ପିଲା ଦୁଇଟିତ ଗାଡ଼ି ପାଖ ଛାଡ଼ିଲେନି ।

ଆନନ୍ଦ ବାବୁ ବଲାଙ୍ଗୀରରୁ ସମ୍ବଲପୁରକୁ ଗାଡ଼ି ଚଳାଇବା ଲାଗି ରୁଟ୍ ପରମିଟ୍ ଲାଗି ଦରଖାସ୍ତ କଲେ । ମାସକ ଭିତରେ ମିଳିଗଲା ପରମିଟ୍ । ତା'ପରେ ଗାଡ଼ି ଚଳାଚଳ ଆରମ୍ଭ ହୋଇଗଲା । ମଜାକଥା ହେଉଛି—ନିଜେ ଆନନ୍ଦ ବାବୁ ହିଁ ଗାଡ଼ିକୁ ଡ୍ରାଇଭିଂ କରନ୍ତି ଓ ସାଥରେ କଣ୍ଡକ୍ଟର ରୂପେ ରଖିଛନ୍ତି ନିଜର ସାନ ଭାଇଟିକୁ । ଆଉ ଗୋଟିଏ ଲୋକକୁ ହେଲ୍‌ପର କରି ରଖାଯାଇଛି । ଗାଡ଼ି ଚଳିବା ବର୍ଷକରୁ ବେଶୀ ହେଲାଣି—କିନ୍ତୁ ଗାଡ଼ିର କଣ୍ଡିସନ୍ ଭଲ ଅଛି ।

ମୁଁ ପଚାରିଲି—ଆନନ୍ଦ ବାବୁ ! ଗାଡ଼ି କଣ୍ଡିସନ୍ ଭଲ ରହିଛି କେମିତି ?

ସେ କହିଲେ—ଆମେ ଦୁଇଥର ପ୍ରତିଦିନ ଗାଡ଼ିର ଯତ୍ନ ନେଉ । ମୁଁ ତ ପଚାଶ କିଲୋମିଟରରୁ ଅଧିକ ବେଗରେ ଗାଡ଼ି ଚଳାଏ ନାହିଁ । ପ୍ରତିଦିନ ଗାଡ଼ି ୨୫୦ କିଲୋମିଟର ଦଉଡ଼ୁଛି । ଆପଣ ମୋ ଗାଡ଼ିଟି ଦେଖନ୍ତୁ ତ !

ଲକ୍ଷେ ଟଙ୍କା କେବେ କେମିତି ଶୁଝିବେ ବୋଲି ପ୍ରଶ୍ନ କରନ୍ତେ—ସେ କହିଲେ—ମୋର ଜଣେ ଦୁ'ଜଣ ବନ୍ଧୁ ମୋପାଇଁ ଜାମିନ୍ ରହିଛନ୍ତି । ୬୭ଟା କିସ୍ତିରେ ମୋତେ ଏତେବଡ ଋଣ ନିଶ୍ଚିତ ଶୁଝିବାକୁ ପଡ଼ିବ । ଏ ପର୍ଯ୍ୟନ୍ତ ୪୫ ହଜାର ଟଙ୍କା ଶୁଝି ଦେଲିଣି । ପ୍ରତିଦିନ ପ୍ରାୟ ଅଢ଼େଇଶ ଟଙ୍କା ରୋଜଗାର କରେ—ସବୁ ଖର୍ଚ୍ଚ ବାଦ୍ ଯାଇ ପଚିଶ ଟଙ୍କା ଲାଭ ଘରକୁ ଆଣେ ।

ମୁଁ ସେଇ ଗରମ ବେଳରେ ଗୋଟିଏ କୋକାକୋଲା ଖାଇ ନିଜକୁ ସୁସ୍ଥ କରୁଥିଲି । ପଚାରିଲି— ଦେଖନ୍ତୁ !

ଗାଡ଼ି ଚଳାଇବା ବଡ଼ ବିପଦଜନକ କାର୍ଯ୍ୟ—ପ୍ରତିଦିନ ଦୁର୍ଘଟଣାର ସଂଖ୍ୟା ଦେଖି ଆପଣଙ୍କ ମନେ ଏ ବ୍ୟବସାୟ ପ୍ରତି ବିରକ୍ତି ଲାଗିବ ନାହିଁ ?

ଆନନ୍ଦ ବାବୁ ହସିଲେ । କହିଲେ—ବିପଦ ମୁଣ୍ଡାଇବା ତ ଜୀବନ ଅଙ୍ଗ !! ଗୋଲାପ ଶେଯରେ ଶୋଇ ରହିଲେ ତ ଆଉ ଯମ ଛାଡ଼ିଦେବ ନାହିଁ ? ଯଦି କେବେ ମରିବାର ଥିବ ଅବଶ୍ୟ ଘଟିବ । କିନ୍ତୁ ଦୁର୍ଘଟଣା ମାନେ ଦୁର୍ଘଟଣା । ଧୀରେ ଧୀରେ ରାସ୍ତାର ବାମ କଡ଼ରେ ମାଛିକୁ ମ ନକହି ଚାଲୁଥିବା ଲୋକ ବି କେବେ କେବେ ଦୁର୍ଘଟଣାରେ ପଡ଼ି ମରେ । ତଥାପି—ଆମକୁ ଖୁବ୍ ସାବଧାନ ରହିବାକୁ ପଡ଼ିବ । ଆମେ ଖୁବ୍ ସାବଧାନରେ ଗାଡ଼ି ଚଳାଉ ମଧ୍ୟ । ମୁଁ ଗାଡ଼ିଚଳା ବ୍ୟବସାୟ ଛାଡ଼ିବି ନାହିଁ । ବରଂ ଆଉ ଗୋଟିଏ ଗାଡ଼ି କିଣିବାକୁ ମୁଁ ମସୁଧା କରୁଛି । ଏ ଗାଡ଼ିର ଜୀବନବୀମା ହୋଇଛି । ଲକ୍ଷେ ଟଙ୍କାରେ ମୋ ଜୀବନ ବି ବୀମା ହୋଇଛି ।

ବଲାଙ୍ଗୀରର ଦି'ପ୍ରହର ଖରାଆଡ଼େ ନିଆଁ ଜଳିବା ଭଳି ଲାଗୁଥାଏ । ପେଟରେ ବି ଜଳିଲାଣି ଭୋକର ନିଆଁ । ଆନନ୍ଦ ବାବୁଙ୍କୁ ଧନ୍ୟବାଦ ଦେଇ ଉଠିଲି ।

ଜିଲ୍ଲା ଲୋକ ସଂପର୍କ ଅଫିସର ମତେ ଗୋଟିଏ ଫଟୋ ଧରାଇଦେଲେ । ଫଟୋରେ ଆନନ୍ଦବାବୁଙ୍କ ସଙ୍ଗେ ସେ ନିଜେ ଠିଆ ହୋଇଛନ୍ତି ତାଙ୍କ ମିନିବସ୍‌ଟି ପାଖରେ । ଖୁବ୍ ଭଲ ଲାଗିଲା । ଆସିଲାବେଳେ ଆନନ୍ଦ ବାବୁଙ୍କୁ ପଚାରିଲି—ଆନନ୍ଦ ବାବୁ ! ଆପଣଙ୍କ ଆଦର୍ଶ ଓ ଉଦ୍ୟମ ପ୍ରଶଂସନୀୟ ।

ଆନନ୍ଦ ବାବୁ କୃତଜ୍ଞତାର ଭାବ ଦେଖାଇ ପ୍ରତିନମସ୍କାର କଲେ । କହିଲେ—ସରକାର ଯୋଉସବୁ ଲୋକହିତକର ଯୋଜନାମାନ କରୁଛନ୍ତି—ସେଥିରୁ ଆମେ ଯଦି ସୁଯୋଗ ନ ନେଇପାରୁ ତେବେ ଦୋଷ ଆମର—ସରକାରର ନୁହେଁ ।



## ସେଚ କୂପ ନିର୍ମାଣରେ ରାଜ୍ୟର ଉଲ୍ଲେଖନୀୟ ଅଗ୍ରଗତି

ଜଳସେଚନପାଇଁ ରାଜ୍ୟରେ ଥିବା ବିପୁଳ ଭୂତଳ ଜଳ ସମ୍ପଦକୁ ଉପଯୋଗ କରିବାପାଇଁ ସରକାର ବିଭିନ୍ନ ବ୍ୟାଙ୍କମାନଙ୍କ ସହାୟତାରେ ଯେଉଁ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ତଦନୁସାରେ ଗତ ମାର୍ଚ୍ଚ ମାସ ଶେଷ ସୁଦ୍ଧା ୧୮,୫୮୮ଟି ସେଚ କୂପର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ଏଗୁଡ଼ିକ ମଧ୍ୟରୁ ଭୂ-ଉନ୍ନୟନ ବ୍ୟାଙ୍କ ୮,୦୫୧ଟି କୂପ, କେନ୍ଦ୍ର ସମବାୟ ବ୍ୟାଙ୍କ ୯,୦୬୪ଟି କୂପ ଏବଂ ବିଭିନ୍ନ ବ୍ୟବସାୟୀ ବ୍ୟାଙ୍କମାନେ ୧,୪୫୫ଟି କୂପ ପାଇଁ ସଂପୃକ୍ତ ଚାଷୀମାନଙ୍କୁ ଆବଶ୍ୟକ ଋଣ ଦେଇଛନ୍ତି ।

ସେଚ କୂପ ଯୋଜନା କାର୍ଯ୍ୟକାରୀ ହେବା ଦିନଠାରୁ ଗତ ବର୍ଷ ଜୁନ୍ ମାସ ଶେଷ ସୁଦ୍ଧା ୮୬,୧୭୭ଟି କୂପ ନିର୍ମିତ ହୋଇଥିଲା । ଏହାକୁ ମିଶାଇ ରାଜ୍ୟରେ ଗତ ମାର୍ଚ୍ଚମାସ ଶେଷ ସୁଦ୍ଧା ସମୁଦାୟ ୧ ଲକ୍ଷ ୪ ହଜାର ୭୬୫ଟି କୂପର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇସାରିଛି । ଏଥି ମଧ୍ୟରୁ ଗଞ୍ଜାମ ଜିଲ୍ଲାରେ ସର୍ବାଧିକ ୩୭,୮୯୫ଟି କୂପ ନିର୍ମିତ ହୋଇଛି ।



# ଶ୍ରମଶିବିର ବାରମାସ

ଶ୍ରୀ ...

ଆମ ଦେଶରେ ଛୋଟ ଛୋଟ କଥାକୁ ମାତ୍ର ସଦି ବଡ଼ କରିବାର। ନହାତ ସାଧାରଣ କଥା, କିନ୍ତୁ ଛୋଟ କାମଟି ଗୋଟିଏ ବଡ଼ କାମ ହେବା ଅତି ବିରଳ। ସହର, ମଫସଲ, ଶିକ୍ଷିତ, ଅଶିକ୍ଷିତ ସମସ୍ତଙ୍କ ପାଇଁ ଏ କଥାଟି ପ୍ରଯୋଜ୍ୟ।

"ଦାସେ କହିଲେ— ମହାପାତ୍ରେ କାଟିଲେ।" "ଅମୁକ ରହିଲେ, ତମୁକ ରହିବେନି।" "ତାଙ୍କର ସ୍ୱାର୍ଥ ପଡ଼େ ନାହିଁ।" "ସେ ଆମ ଲୋକ ନୁହଁନ୍ତି।" "ମୁଁ ତାଙ୍କୁ କହିବିନି।" "ଆମେ କାହିଁକି ମୁଣ୍ଡ ଖେଳାଇବା?" "ଏମେ ଲୋକ ନା ଭଣ୍ଡାଙ୍କି?" "ଆମେ ନଥିଲେ ସେମାନେ କେମିତି କରିବେ, ଦେଖିବା।" "ଆମର ହକ୍ ଅଛି।" "ମୋଟାମୋଟି ସରକାରଙ୍କ କଥା।" "ସରକାର କରିବେନି"? ଏତିକି କଥାରେ ଆମର ମୀମାଂସା ହୋଇଯାଏ। ଯୋଜନା ପରିକଳ୍ପନା ଓ ଅଗ୍ରଗତିର ଚକ ଗୋଡ଼ିଆ ଦାମ୍ଭର ଚାହୁଁଥା ଭିତରେ ଚକ୍ର ରହିଯାଏ।

କଥା ନ କହି ହାତ ଲଗାଇ ଲୁଗାକୁ ମଲି ଝିଙ୍କିଏ ଝାଡ଼ିବା ପାଇଁ ଆମର ଢେର ନାହିଁ। ମୋ ସ୍ମୃତି ଭିତରେ ଦୁଇଟି ଯୁଗ ବିତିଗଲେ ସୁଦ୍ଧା ଆମେ ଆମ ପିଲାଙ୍କୁ ପାଠ ପଢ଼ାଇଲୁ ଏତିକି। ସ୍ୱାଧୀନ ଭାରତର ଭେଣ୍ଡା ପିଲାଏ ଗତର ଖଟିବା ଶିଖିଲେନି। ଲହୁ ଲୁହାଣ ହୋଇ ବଞ୍ଚିବାର ମଜା ଶିଖିଲେନି। ନିଃସ୍ୱାର୍ଥ ସେବା ଓ ଶ୍ରମର ଆତ୍ମ-ଶାନ୍ତି ଅନୁଭବ କଲେନି।

ତିନି ବର୍ଷ ତଳେ ଜାତୀୟ ସେବା ସଂସ୍ଥା ଯୋଜନାର ଅଧୀନ ଆମ ଛୋଟ ଗାଉଁଲି କଲେଜଟିର ସୀମା ଡେଇଁ ଭିତରକୁ ପଶି ଆସିଲା। ଏ ଭିତରେ ଛୋଟ ବଡ଼ ୭/୮ଟି ଶିବିର ହୋଇସାରିଲାଣି। ତଥାପି ସମ୍ବଲପୁର ଜିଲ୍ଲାର ଅତାବିରା ପଞ୍ଚାୟତ ସମିତିର ଦୁଲମପୁର ଗ୍ରାମରେ ଯେଉଁ ଅନୁଭୂତି ମିଳିଲା, ତାହା ଅବିସ୍ମରଣୀୟ।

ଦୁଲମପୁର ଅନେକ ଦିନର ପୁରୁଣା ଗାଁ। ମୁଖ୍ୟ ଗାଁଟି ବର୍ତ୍ତମାନ ପ୍ରାୟ ଏକ ମାଇଲ୍ ଆୟତନରେ ଚାରି ପାଞ୍ଚଟି ପଡ଼ାରେ ବିଭକ୍ତ ହୋଇସାରିଛି। ଗାଁରେ ଗୌନ୍ତିଆ ନାହାନ୍ତି। ତେଲୀ, ବରାଳ, ସାହୁକାର, ଧନୀଲୋକ ନାହାନ୍ତି। ବହୁ ଲୋକ ସ୍ଥଳଚଳେଣି। ଅନେକ ନୂଆ ଲୋକ ଆସି ଘର କଲେଣି, ଜମି କଲେଣି। ଏପରିକି ପ୍ରଦେଶ ବାହାରୁ ଦକ୍ଷିଣ ଭାରତୀୟ ଭୂତୀ, ରାଜସ୍ଥାନ ଓ ହରିଆନାର ବ୍ୟବସାୟୀ ଆସି ଗାଁ ବାସିନ୍ଦା ହେଲେଣି। ଗାଁ ପରିସରରେ ବଡ଼ଟେ ଧାନକଲ ବସିଲାଣି। ବ୍ୟକ୍ତିଗତ ଭାବରେ ବୋଧହୁଏ ସମସ୍ତଙ୍କର ଦି ପଇସା ରୋଜଗାର ହେଉଛି। ଉତ୍ପୀଡ଼ନ ନାହିଁ। କିନ୍ତୁ ଶାନ୍ତି ନାହିଁ? କେହି କାହା କଥା ଶୁଣିବାକୁ ରାଜି ନୁହଁନ୍ତି। ସମସ୍ତଙ୍କ ମନରେ ପ୍ରତ୍ୟେକଙ୍କ ପାଇଁ ଘୃଣା, ଅସୂୟା ଓ ତାଚ୍ଛଲ୍ୟ।

୧୯୭୭ ମସିହାର ଗ୍ରୀଷ୍ମ ଅବକାଶର ଶେଷ ଭାଗରେ ଜୁନ୍ ୨୫ ତାରିଖରେ ମୋଟେ ୨୨ ଜଣ ଲୟୋଲା କଲେଜ ଛାତ୍ର (ଜାତୀୟ ସେବା ସଂସ୍ଥାର ସ୍ୱେଚ୍ଛାସେବୀ) ଓ ଦୁଇଜଣ ଅଧ୍ୟାପକଙ୍କ ସାଙ୍ଗରେ ଦୁଲମପୁରର ଉଚ୍ଚପ୍ରାଥମିକ ସ୍କୁଲ୍ ଗୃହରେ ଏକ ଦଶଦିନିଆ ଶିବିର ଆରମ୍ଭ କରାଗଲା । ଏହାର ଉ. ପ୍ରା. ସ୍କୁଲର ତିନିଜଣ ଶିକ୍ଷକ ଏ ଶିବିରର ପ୍ରାରମ୍ଭିକ ପ୍ରସ୍ତୁତିପାଇଁ ଖବର ପାଇଥିଲେ ଓ ସେମାନେ ବାଟ ଚାହିଁ ବସିଥିଲେ । ଦୁଇ ଦିନ ଭିତରେ ଅତାବିରା ଗ୍ରାମ୍ୟ ସେବା କେନ୍ଦ୍ରର ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ ଓ ତାଙ୍କର ଦୁଇଜଣ ସହକର୍ମୀ ଏବଂ ବୁର୍ଲାସ୍ଥିତ ବୀର ସୁରେନ୍ଦ୍ର ସାଏ କଲେଜର (ଏସ. ସି. ଏମ.) ସାମାଜିକ ପ୍ରତିଷେଧକ ଚିକିତ୍ସା ବିଭାଗର ତିନିଜଣ ଡାକ୍ତର ଏହି ଶିବିରରେ ଯୋଗଦେଲେ । ଗାଁର ବିଭିନ୍ନ ପଡ଼ାରେ ବୁଲି ଓ ଗାଁ ସ୍କୁଲର ଶିକ୍ଷକମାନଙ୍କ ଜରିଆରେ ଲୋକଙ୍କୁ ବୁଝାଇ ଜାତୀୟ ସେବା ସଂସ୍ଥାର ଅଧ୍ୟାପକ ଓ ସ୍ୱେଚ୍ଛାସେବୀମାନେ ଦୁଇଟି ସଭାର ଆୟୋଜନ କଲେ ଏବଂ ଶିବିରର ଲକ୍ଷ୍ୟ ବିଷୟରେ ଲୋକଙ୍କୁ ବୁଝାଇଲେ । ଅନୁଧ୍ୟାନରୁ ଜଣା ପଡ଼ିଲା ଗ୍ରାମର ମୁଖ୍ୟ ସମସ୍ୟାମାନଙ୍କ ମଧ୍ୟରୁ ପ୍ରଥମଟି ହେଲା ପରିଷ୍କାର ଜଳର ଅଭାବ, ଦ୍ୱିତୀୟରେ ମୁଖ୍ୟ ସଂଯୋଗ ରାସ୍ତାର ଅଭାବ, ତୃତୀୟରେ ଗ୍ରାମର ମୁଖ୍ୟ ରାସ୍ତା ଉପରେ ଅବାରିତ ବୋହି ଯାଉଥିବା ପାଣିର ନିଷ୍କାସନ, ଚତୁର୍ଥରେ ସ୍କୁଲ ଗୃହର ନିର୍ମାଣ ଏବଂ ଶେଷରେ ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ପ୍ରତିଷେଧକ ଚିକିତ୍ସା ବ୍ୟବସ୍ଥା ପ୍ରତି ଗ୍ରାମବାସୀଙ୍କର ଉଦାସୀନତା ।

ବ୍ୟକ୍ତିଗତ ଭାବରେ କେତେକଜଣ ଗ୍ରାମବାସୀ ସଚେତନ ଥିଲେ ମଧ୍ୟ ବିଗତ କୋଡ଼ିଏ ବର୍ଷର ଏ ସମସ୍ୟାଗୁଡ଼ିକର ଦୂରୀକରଣ ପାଇଁ କେହି ଚେଷ୍ଟିତ ହେଲାପରି ମନେହେଉ ନାହିଁ । ଉପରଲିଖିତ ପ୍ରତ୍ୟେକ ସମସ୍ୟା ବିଷୟରେ ଅଧ୍ୟାପକ ଓ ସ୍ୱେଚ୍ଛାସେବୀମାନଙ୍କର ସମାଧାନର ପନ୍ଥାକୁ ଗ୍ରାମବାସୀମାନେ ଗ୍ରହଣ କରିବାରେ ଅନେକ ମତାନୈକ୍ୟ ଦେଖାଗଲା । କୋଡ଼ିଏ ବର୍ଷର ବ୍ୟକ୍ତିଗତ, ସାମାଜିକ ଓ ରାଜନୈତିକ ମତବିରୋଧ ଯୋଗୁଁ କୌଣସି ଏକ ଯୋଜନାକୁ ଦଶଦିନ ଭିତରେ ସମ୍ପୂର୍ଣ୍ଣ କରିବାର ସମ୍ଭାବନା ଦେଖାଯାଉ ନଥିଲା ।



ଜଳପୂର୍ଣ୍ଣ ଦୁଲମପୁରର ଦେଉଳ ବନ୍ଧ

ଗ୍ରାମର ମଧ୍ୟ ଭାଗରେ ଅବସ୍ଥିତ ଏକ ବଡ଼ ବନ୍ଧର ଜଳ ବର୍ଷ ବର୍ଷ ଧରି ଅପରିଷ୍କୃତ ହୋଇ ରହି ଆସିଛି । ବନ୍ଧର ଉପର ଭାଗରୁ ଧାନବିଲର ଦୁର୍ଗନ୍ଧ ଜଳର କିଛି ଅଂଶ ଏହି ବନ୍ଧ ମଧ୍ୟରେ ଆସି ପଡୁଛି । ସରକାରୀ ଜଳସେଚନର ଏକ ଛୋଟ କେନାଲ ଏହି ବନ୍ଧର ଭିତର ଦେଇ ପ୍ରବାହିତ

ହୋଇଛି । ତାହାର ଉପରି ସ୍ତର, ଧୀରେ ଧୀରେ ଜଳପୂର୍ଣ୍ଣ ଅଞ୍ଚଳକୁ ଦ୍ରୁତ ଗ୍ରାସ କରି ଅଧିବାସୀମାନେ ବୃକ୍ଷ ଜନ୍ମି କରିପାରିଲେଣି କିନ୍ତୁ କେହିହେଲେ ତାହାର ଜଳକୁ ପରିଷ୍କାର କରିବାର ଚିନ୍ତା କରି ନାହାଁନ୍ତି । ତାହାର ଉଭୟ ପାର୍ଶ୍ୱରେ ଦୁଇଟି ପୋଖରୀ ଅଛି ଯାହା କେବଳ ଗ୍ରାମବାସୀଙ୍କର ବ୍ୟବହାର କରିବାରେ ନିୟୋଜିତ ହୋଇଛି । ସେଥିରୁ ଗୋଟିଏ ପୋଖରୀକୁ କାଳୁପଦ ତଳେ ଗ୍ରାମବାସୀମାନେ ପରିଷ୍କାର କରି ବ୍ୟବହାର କରୁଥିଲେ । ଗ୍ରାମର ପାଖ ପୋଖରୀଟିର କୂଳରେ ବହୁ ପୁରୁଣା ଏକ ମହାଦେବ ମନ୍ଦିର । ଅନ୍ୟ ପୋଖରୀଟି ଅପେକ୍ଷାକୃତ "ଡେଉଲବନ୍ଧ" ବା ମନ୍ଦିର ପୋଖରୀଠାରୁ ଅଳ୍ପ ଛୋଟ ।

ଶୁଣିବାକୁ ମିଳିଲା ପୋଖରୀ ଏବଂ ତାହା ପରିଷ୍କାର କରିବାପାଇଁ ଯଥାସମ୍ଭବ ବାରମ୍ବାର ସହଯୋଗ ଖୋଜିଥିଲେ ମଧ୍ୟ ଏହା କେବଳ ସେତେବେଳେ ଆଂଶିକ ଭାବରେ ହୋଇପାରିଥିଲା । କାରଣ ହେଲା, ଗ୍ରାମବାସୀଙ୍କ ଭିତରେ ଅସହଯୋଗ ଓ କର୍ମକର୍ତ୍ତାଙ୍କ ଉପରେ ଗ୍ରାମବାସୀଙ୍କର ଅବିଶ୍ୱାସ । ଫଳରେ ମନ୍ଦିର ପାଖ ପୋଖରୀ ଉପରେ ପ୍ରାୟ କୋଡ଼ିଏ ବର୍ଷର ଦଳ ଜମି ପୋଖରୀକୁ ଏକ ଗାଡ଼ ପଡ଼ିଆ ରୂପେ ପରିଣତ କରିପାରିଥିଲା । ଏ ପୋଖରୀଟିର ଆୟତନ ପ୍ରାୟ ପାଞ୍ଚ ହଜାର ବର୍ଗଗଜ ଏବଂ ଏହାର ଦଳ ଗୋଟିଏ ଗୋଟିଏ ଜାଗାରେ ପ୍ରାୟ ଦୁଇ ପାଞ୍ଚ ଫୁଟ ବହଳରେ ଜମି ଯାଇଥିଲା । ତଥାପି ଗ୍ରାମର ଅତି ନିକଟରେ ଥିବାରୁ ସ୍ନାନ ଘାଟର ଆଖପାଖ ଅଞ୍ଚଳରେ ଦଶ ବାର ଫୁଟ ଅନ୍ତରରେ ଜଳକୁ ଘଙ୍ଗାଳିଆ ଭିତରେ ଥିବା ଦୁର୍ଗନ୍ଧ ଓ ଅପରିଷ୍କୃତ ଜଳକୁ ମହିଳା ଓ ଶିଶୁମାନେ ସବୁପ୍ରକାରେ ବ୍ୟବହାର କରିବାକୁ ବାଧ୍ୟ ହେଉଥିଲେ ।

ପୋଖରୀର ମୁଣ୍ଡଠାରୁ ଗୋଡ଼ଯାଏଁ ପର୍ଯ୍ୟନ୍ତ ଚାରିପାଖରୁ ଏତେ ବହଳରେ ଘାସ ଲତା ଓ ଦଳ ଜମି ରହିଥିଲା ଯେ, ଲୋକେ ବେଳେବେଳେ ତା ଉପରେ ଗୋରୁ ମଇଁଷି ଚରାଉଥିଲେ ।



ଡେଉଲବନ୍ଧ ପୋଖରୀର ଦଳକଢ଼ା କାର୍ଯ୍ୟରେ ଲାଗିଛନ୍ତି ଅଧ୍ୟାପକ ଓ ଛାତ୍ରମାନେ

ପ୍ରଥମ ଓ ଦ୍ୱିତୀୟ ଦିନର ପର୍ବରେ ଉପସ୍ଥିତ ଗ୍ରାମବାସୀମାନେ ସ୍ୱେଚ୍ଛାସେବୀମାନଙ୍କ ସହିତ ସହଯୋଗ କରିବାକୁ ସମ୍ମତ ହେଉଥିଲେ ସୁଦ୍ଧା ପରଦିନ ସକାଳୁ ସେମାନେ କେହି ଦେଖାଦେଲେ ନାହିଁ । ତଥାପି ଅଧ୍ୟାପକ, ଶିବିରର ଅନ୍ୟାନ୍ୟ କର୍ମକର୍ତ୍ତା ଓ ସ୍ୱେଚ୍ଛାସେବୀମାନଙ୍କର ନିର୍ଦ୍ଧାରିତ କାର୍ଯ୍ୟ ନିର୍ଘଣ୍ଟ ଅନୁସାରେ ସେହି ପୋଖରୀର ଦଳ ସଫା କରିବା ପରିକଳ୍ପନା ଗ୍ରହଣ କରିଥିଲେ ।

କୋଡ଼ିଏ ପଚିଶ ଜଣ ଅଦମ୍ୟଙ୍କ ଲୋକ ଦଳ ସଫା କରିବା କାମରେ ହାତ ଦେଲେ । ଦା, କୋଡ଼ି, ବଉଦାଉଁଶ, ଦଉଡ଼ି, ବାଉଁଶ ପାହୁଆ ନେଇ ସେହି ଶାଗ ଲଟା ଦଳକୁ ଖଣ୍ଡ ଖଣ୍ଡ କରି ଟାଣି ହୁଡ଼ା ଉପରକୁ ଟେକ, ବାହାରକୁ ଫୋପାଡ଼ିବା କାର୍ଯ୍ୟ ଆରମ୍ଭ ହୋଇଗଲା । ବସ୍ତୁତଃ ଏକ ପକ୍ଷଆ ମଧ୍ୟରେ ଏଇ ସ୍ୱେଚ୍ଛାସେବୀ ଦଳ ସମୁଦ୍ରକୁ ଶଙ୍ଖେ ପାଣିପରି ଦେଖା ଯାଉଥିଲେ । କିନ୍ତୁ ସମସ୍ତ ପରେ ଗ୍ରାମବାସୀଙ୍କ ଭିତରୁ କେତେଜଣ ଆସି ହୁଡ଼ା ଉପରେ ଥିବା ଓସ୍ତ ଗଛ ଗୁଡ଼ିକତଳେ ଛିଡ଼ା ହୋଇ, ବସି ପଦେ ଅଧେ ନିର୍ଦ୍ଦେଶ ଦେଲେ, କେହି କେହି ତାଚ୍ଛଲ୍ୟ କଲେ, ଆଉ କେହିବା ହସରେ ଉଡ଼େଇଦେଲେ । ଖରା ଝାସ ଓ ବର୍ଷା ମାଡ଼ ଖାଇ ଦିନ ଗୋଟାଏ ବୁଲନ୍ତା ବେଳକୁ ସ୍ୱେଚ୍ଛାସେବୀମାନେ ଯେତେବେଳେ ଶିବିରକୁ ଫେରି ଆସୁଥିଲେ, ସେତେବେଳେ ବସ୍ତିବାଲା ସାହିରୁ ଏ କଥା ବି ଶୁଣା ଗଲା ଯେ "ସରପଞ୍ଚ କଲେଜ ପିଲାଙ୍କୁ ନ' ଶହ ତିରାଣ ଟଙ୍କାରେ ଏ ପୋଖରୀ ସଫା କରିବାପାଇଁ ଠିକା ଦେଇଛନ୍ତି ।" ସ୍ୱେଚ୍ଛାସେବୀମାନଙ୍କ ମନରେ ଦୁଃଖ, ରାଗ ଓ ଅଭିମାନର ଲହରୀ ଖେଳିଗଲା । କାଦୁଅ, ପଙ୍କ, ଦଳ, ଦୁର୍ଗନ୍ଧ ପାଣି, ସାପ, ବେଙ୍ଗ, ଜୋକ ଏବଂ ମାଛଙ୍କ ଭିତରେ ଦିନ ସାରା ବୁଡ଼ି ରହି ଦେହହାତ ଗୋଡ଼କୁ ଖଣ୍ଡିଆ ଖାବରଖିଆ କ୍ଳାନ୍ତ ହୋଇ ଫେରୁଥିବା ଲୋକଙ୍କ ପକ୍ଷରେ ଏପରି ଏକ ସମ୍ଭାଷଣ ନିଶ୍ଚୟ ରୁଚିକର ନୁହେଁ । ତଥାପି ମନର ସବୁ ଦୁଃଖ, ରାଗ ଓ ଅଭିମାନକୁ ପୋଛି ଦେଇ ତହିଁ ଆରଦିନ ସକାଳେ ପୁଣିଯାଇ ସ୍ୱେଚ୍ଛାସେବୀମାନେ ପୋଖରୀ ଭିତରେ ପଶିଲେ ।

ମଣିଷ, ଯାହାହେଲେ ବି ମଣିଷ । ସେ ଅବୁଝା, କିନ୍ତୁ ପୁଣି ବୁଝେ—ବୁଝିଯାଏ । ସେ ଦିନ ସଂଧ୍ୟାର ସଭାରେ ସେଇ କେତେଜଣ ଗ୍ରାମବାସୀ ଆସି ଯୋଗଦେଲେ ସେମାନଙ୍କ ଭିତରେ ଥିଲେ ଫୁଲନପୁରର "ଇନ୍ଦିରା ନନ୍ଦିନୀ ମହିଳା ସମିତି"ର ଶ୍ରୀମତୀ ଷଡଙ୍ଗୀ ଓ ଶ୍ରୀମତୀ ସ୍ୱାଇଁ ଏବଂ ତାଙ୍କର କେତେଜଣ ସହଯୋଗୀ । ସେମାନଙ୍କର ହୃଦୟରେ ଥିଲା ମମତା, ମନରେ ଥିଲା ଏକତା, କଥାରେ



ଇନ୍ଦିରା ନନ୍ଦିନୀ ମହିଳା ସମିତିର ସଭ୍ୟାମାନେ ମଧ୍ୟ ଦଳସଫା କାର୍ଯ୍ୟରେ ସାହାଯ୍ୟ କରୁଛନ୍ତି

ଦୃଢ଼ତା ଏବଂ ଚକ୍ଷୁରେ ଥିଲା ଏକାଗ୍ରତା । ସେମାନେ ସ୍ୱେଚ୍ଛାସେବୀଙ୍କ କାର୍ଯ୍ୟକୁ ଦୁଇ ତିନ ଦିନ ହେଲା ନିରୀକ୍ଷଣ କରୁଥିଲେ । ଆଶ୍ଚର୍ଯ୍ୟର କଥା ସେହି ଜୀର୍ଣ୍ଣା ଶୀର୍ଣ୍ଣା ମା ଭଉଣୀମାନେ କହିଦେଲେ ସେମାନେ କାମରେ ସହଯୋଗ କରିବେ ।

ତହିଁ ଆରଦିନ ସକାଳୁ ସ୍ୱେଚ୍ଛାସେବୀମାନେ ପୋଖରୀ ଭିତରେ ପଶିବା ସଙ୍ଗେ ସଙ୍ଗେ ହୁଡ଼ା ଉପରେ ଦେଖା ଦେଲେ ଷାଠିଏ ସତୁରି ଜଣ ମହିଳା । ତାଙ୍କ ଭିତରେ ଅଛନ୍ତି ପାଞ୍ଚ ଛଅ ବର୍ଷ ବୟସର

ପିଲାଠୁ ଆରମ୍ଭକରି ଷାଠିଏ ସତୁରି ବର୍ଷର ବୁଢ଼ା ପର୍ଯ୍ୟନ୍ତ । ସେମାନେ ଥିଲେ ସବୁ ଜାତିର । ହୁଡ଼ା ଉପରୁ ଓହ୍ଲେଇ ଆସି ସୁଙ୍ଗୁଡ଼ି, ବୋଡ଼ା ଓ ହାତ ଲଗେଇ ସେମାନେ ଖଣ୍ଡ ଖଣ୍ଡ ଦଳକୁ ହୁଡ଼ା ଉପରକୁ ଟୋପାଇବା କାମ ଆରମ୍ଭ କଲେ । ତାଙ୍କ ମୁଁହରେ ଥିଲା ହୁଲହୁଲି ଓ ହସର ଜୁଆର ଓ ସ୍ବେଚ୍ଛାସେବୀମାନଙ୍କ ମନରେ ଅଭୂତପୂର୍ବ ଉତ୍ସାହ । ମଣିଷ ପରିଶ୍ରମ କରିବାବେଳେ ସେ କେତେ ଖୁସି ହୋଇପାରେ, ତାର ଦୃଶ୍ୟ ଦେଖିବାକୁ ମିଳିଲା ସେ ଦିନ ଦୁଲମପୁରର ଦେଉଳ ବନ୍ଧରେ । ସେହି ଅଭିନନ୍ଦନୀୟ ଦୃଶ୍ୟ ଯେ ନ ଦେଖିଛି ସେ କେବେହେଲେ ବିଶ୍ବାସ କରିବନାହିଁ ଯେ ଶ୍ରମହିଁ ମଣିଷକୁ ଶାନ୍ତି ଦିଏ ।

ସ୍ବେଚ୍ଛାସେବୀମାନେ ନୂତନ ପ୍ରେରଣାରେ କାର୍ଯ୍ୟରେ ଲାଗିଗଲେ । ପ୍ରତିଦିନ ସକାଳ ସାତଟାରୁ ଦିନ ଦୁଇଟା ପର୍ଯ୍ୟନ୍ତ ଦଶଦିନ ପର୍ଯ୍ୟନ୍ତ ଟିକି ଟିକି କରି ଦଳଦାଢ଼ି ଠେଲା ଠେଲା କରି ପାଣି ଉପରେ ଭସେଇ, ପଙ୍କ ଭିତରେ ବୁଡ଼ି ପୋଖରୀ ସଫା କାମ ଆଗେଇ ଚାଲିଲା । ଯେଉଁମାନେ କଥା କହୁଥିଲେ ସେମାନେ କଥା ବନ୍ଦ କଲେ । ଯେଉଁମାନେ ଟାପରା କରୁଥିଲେ ସେମାନଙ୍କର ମୁହଁ ଆଉ ଦେଖାଗଲା ନାହିଁ । ଯେଉଁମାନେ ଗ୍ରାମବାସୀଙ୍କର ସୁରୁଖା ନେବା ବୋଲି ଭାବିଥିଲେ ସେମାନେ ଲଜ୍ଜାରେ ମୁହଁ ଢାଙ୍କିଲେ ।

ଚାରି ଜୁଲାଇ—ଶିବିରର ଉଦ୍‌ଯାପନ ଦିବସ । ପୋଖରୀ ହୁଡ଼ାର ଚାରି ପାଖର ପାଣିଧାର ସୁସ୍ପଷ୍ଟ ହୋଇ ଦେଖା ଗଲାଣି । ସାଙ୍କେତିକ ହୋଇ ଦଳ ସବୁ ବାହାରକୁ ଭସାଇ ଦିଆଗଲାଣି । ପୋଖରୀ ମଝିର କେତୋଟି ପଦ୍ମନାଡ଼ ଛଡ଼ା ପାଣି ଉପରେ ଆଉ କୌଣସି ଦଳର ଚିହ୍ନବର୍ଣ୍ଣ ଦେଖାଯାଉ ନାହିଁ । ଚାରି ତାରିଖ ଦିନ ସନ୍ଧ୍ୟାରେ ଉଦ୍‌ଯାପନ ଦିବସ ପାଳନ । ଉ: ପ୍ରା: ସ୍କୁଲର ଶିକ୍ଷକ ଓ



ଦଶଦିନ ପରେ ପରିଷ୍କୃତ ଦେଉଳ ବନ୍ଧ

ମହିଳା ସମିତିର ସଭ୍ୟମାନଙ୍କ ମନରେ ଉଦାସୀନତା ଭରିଗଲା । ସନ୍ଧ୍ୟାରେ ମହିଳା ସମିତିର ସଭ୍ୟମାନେ ଆସି ଅନୁରୋଧ କଲେ "ବାପାମାନେ ! ଆଉ ଦିନଟିଏ ରହିଯାଅ, ବାକି ସବୁତକ ପଦ୍ମନାଡ଼ କାଟି ପୋଖରୀରେ ନୂଆ ପାଣି ଭର୍ତ୍ତି କରି ତୁମ କାମ ସଂପୂର୍ଣ୍ଣ କରିଯାଅ ।" ଗ୍ରୀଷ୍ମଦୋଷ ଶେଷରେ ପାଞ୍ଚ ଜୁଲାଇରେ କଲେଜ ଖୋଲୁଛି । ତଥାପି ଦଶ ଦିନର ଅକ୍ଲାନ୍ତ ପରିଶ୍ରମ କରି କ୍ଲାନ୍ତ, ଶ୍ରାନ୍ତ ସତ୍ତ୍ୱେହିଁ ସ୍ବେଚ୍ଛାସେବୀଗଣ ମହିଳା ସମିତିର ଅନୁରୋଧ ରକ୍ଷା କଲେ ।

ସୋମବାର ପାଞ୍ଚ ତାରିଖ ସକାଳୁ ଗୁଣି ଦେଖୁ ଅଦ୍ଭୁତ ଦୃଶ୍ୟ, ଷାଠିଏ ବର୍ଷର ଜଣ ମହିଳା ଏବଂ ଶିବିରର ସମସ୍ତ ସ୍ୱେଚ୍ଛାସେବୀ ଏପରିକି ଲରମ୍ବା କଲେଜର ଦୁଇଜଣ ଛାତ୍ରୀ, କେତେଜଣ ଛାତ୍ର ଚତୁର୍ଥ ଶ୍ରେଣୀ କର୍ମଚାରୀ, ବୁଲମପୁର ଉ: ପ୍ରା: ସ୍କୁଲର ଶିକ୍ଷକ, ବୁଲମପୁରର ସମ୍ଭ୍ରାନ୍ତ ବଂଶୀୟ ପରିବାରର କେତେଜଣ ବୟସ୍କ ବ୍ୟକ୍ତି, ଅତବିରା ଗ୍ରାମ୍ୟ ଚିକିତ୍ସା କେନ୍ଦ୍ରର ସ୍ୱାସ୍ଥ୍ୟ ନିରୀକ୍ଷକ, ଡାକ୍ତର ସହକର୍ମୀ, ଚିକିତ୍ସା ମହାବିଦ୍ୟାଳୟର ଛାତ୍ର ସର୍ଜନ ସମସ୍ତେ ହାତ ଲଗେଇ ଦେଲେ ଦେଖିଲି ବନ୍ଧର ସଫେଇ କାମର ପୂର୍ଣ୍ଣାହୁତି ପାଇଁ । ଦଶଦିନର ଶିବିର ଏଗାର ଦିନରେ ସମାପ୍ତ ହେଲା । କିନ୍ତୁ ଦେଖିଲି ବନ୍ଧ ବୋଧହୁଏ ଆଉରି କୋଡ଼ିଏ ବର୍ଷ ପାଇଁକି ସଫା ହୋଇଗଲା ।

ଏହି ଏଗାର ଦିନ ଭିତରେ ଲରମ୍ବା କଲେଜର ସ୍ୱେଚ୍ଛାସେବୀଗଣ ବୁଲମପୁର ଗ୍ରାମ ଭିତରେ ଗୁଡ଼ିଏ କମ୍ପୋଷ୍ଟପିଟ୍, ପ୍ରାୟ ତିନିଶହ କଲେରା ପ୍ରତିଷେଧକ ଇଞ୍ଜେକସନ୍, ଦୁଇଶହ ବସନ୍ତ ନିରାକରଣ ଟୀକା, ପାଞ୍ଚୋଟି ସ୍ୱାସ୍ଥ୍ୟ, ଶିକ୍ଷା ଓ ସହଯୋଗ ପରିବେଷିତ ସଭା, କୋଡ଼ିଏ ବଖା କାର୍ଯ୍ୟକ୍ରମକୁ ଉଣିକିଣ ଆଦିବାସୀ ଓ ହରିଜନ ବସ୍ତିରେ ସାମାଜିକ ଓ ଅର୍ଥନୈତିକ ସର୍ଭେ, ଗୁଡ଼ିଏ କୂଅର ଜଳ ବିଶୋଧନ ଏବଂ ଶହେ କୋଡ଼ିଏ ଜଣଙ୍କର ସ୍ୱାସ୍ଥ୍ୟ ପରୀକ୍ଷା ଓ ଔଷଧ ବଣ୍ଟନ କରି ସାରିଥିଲେ । ବିଶେଷ ସୁଖର କଥା ପ୍ରାଥମିକ ବସନ୍ତ ନିରାକରଣ ଟୀକା ଏହି ଗ୍ରାମର ପ୍ରାୟ ଅଠାବନ (୫୮) ଜଣ ପିଲାଙ୍କୁ ଏହି ଦଶଦିନ ମଧ୍ୟରେ ଦିଆଯାଇ ପାରିଥିଲା ।

ଏ ଦେଶର କୋଟି କୋଟି ସମସ୍ୟା ଭିତରେ ବୁଲମପୁର ଗ୍ରାମର ପାଞ୍ଚ ଛଅଟି ସମସ୍ୟା ନିଶ୍ଚୟ ଅତି ନଗଣ୍ୟ । ଲକ୍ଷ ଲକ୍ଷ ଜାତୀୟ ସେବା ସଂସ୍ଥାର ସ୍ୱେଚ୍ଛାସେବୀମାନଙ୍କର କାର୍ଯ୍ୟ ତୁଳନାରେ ଲରମ୍ବା କଲେଜର ବୁଲମପୁର ସେବା ଶିବିର ଅତି ନଗଣ୍ୟ ହୋଇପାରେ । କିନ୍ତୁ ମୋର ଦୃଢ଼ ବିଶ୍ୱାସ ବୁଲମପୁର ମହିଳା ସମିତିର ପ୍ରତ୍ୟେକ ସଭ୍ୟା ଓ ଏଗାର ଦିନର ଶିବିରର ପ୍ରତ୍ୟେକ ସ୍ୱେଚ୍ଛାସେବୀଗଣଙ୍କର ସହଯୋଗ ଅନ୍ତତଃ ପକ୍ଷରେ ଆମ୍ଭମାନଙ୍କର ଜୀବନର ଏକ ଅବିସ୍ମରଣୀୟ ଅଭିଜ୍ଞତା ହୋଇ ରହିବ । ହୁଏତ ବୟସ୍କ ଗ୍ରାମବାସୀମାନେ ଏ ଅଭିଜ୍ଞତାର ସ୍ପର୍ଶ ପାଇ ନ ପାରନ୍ତି, କିନ୍ତୁ ବୁଲମପୁର ଗାଁର ଦୁଇ ସାଖି ବର୍ଷର ସେଉ କେତେଜଣ ଶିଶୁ ସେଦିନ ତାଙ୍କର କଅଁଳିଆ ହାତରେ କାଦୁଅ ଓ ଦଳ ଫୋପାଡ଼ୁ ଫୋପାଡ଼ୁ ଛୋଟ ଛୋଟ ମାଛ ଓ ଚିଙ୍ଗୁଡ଼ି ଧରିବାପାଇଁ କାଦୁଅ ପଙ୍କ ପାଣିରେ ଜୁଡ଼ବୁଡ଼ୁ ହୋଇ ଦୌଡ଼ୁଥିଲେ—ସେମାନେ ନିଶ୍ଚୟ ଆମର ଅଭିଜ୍ଞତା ଓ ଆତ୍ମଶାନ୍ତିର ସ୍ପର୍ଶ ପାଇବେ । ନିଃସ୍ୱାର୍ଥ ଶ୍ରମ ଓ ସେବାର ଫଳ ସବୁବେଳେ ମିଠା ।

କାଦୁଅରେ ବୁଡ଼ିଥିବା ଚକ ଅରେ ବୁଲିଲେ—ବାର ହାତ ।

ଅଧ୍ୟକ୍ଷ, ଲରମ୍ବା କଲେଜ,
ସମ୍ବଲପୁର

---

## ବିଦ୍ୟାଧରଙ୍କ ପ୍ରଣୀତ 'ଏକାବଳୀ'ର ପାଣ୍ଡୁଲିପି ଆବଶ୍ୟକ

ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ନିର୍ଦ୍ଦେଶାଳୟ ତରଫରୁ ବିଦ୍ୟାଧରଙ୍କ ପ୍ରଣୀତ ସଂସ୍କୃତ ଅଳଙ୍କାର ଗ୍ରନ୍ଥ 'ଏକାବଳୀ' ପ୍ରକାଶ କରାଯିବାପାଇଁ ଉଦ୍ୟମ ହେଉଛି । ଏହି ଗ୍ରନ୍ଥର ତାଳପତ୍ର ପୋଥି ଭାରତବର୍ଷର ବିଭିନ୍ନ ଅନୁଷ୍ଠାନ ଓ ସଂଗ୍ରହାଳୟମାନଙ୍କରୁ ସଂଗୃହୀତ ହେବାପାଇଁ ବର୍ତ୍ତମାନ ପ୍ରଚେଷ୍ଟା ଚାଲିଛି । ଯଦି ଓଡ଼ିଶାରେ କୌଣସି ଅନୁଷ୍ଠାନ ବା ବ୍ୟକ୍ତିବିଶେଷଙ୍କ ନିକଟରେ 'ଏକାବଳୀ' ତାଳପତ୍ର ପୋଥି ବା ଅନ୍ୟ କୌଣସି ପାଣ୍ଡୁଲିପି ଆକାରରେ ରକ୍ଷିତ ଥାଏ, ତେବେ ଯଥାଶୀଘ୍ର ତାହା ସାଂସ୍କୃତିକ ବ୍ୟାପାର ବିଭାଗର ଶାସନ ସଚିବ, ଭୁବନେଶ୍ୱର-୭୫୧୦୦୧ଙ୍କ ଠିକଣାରେ ଜଣାଇଲେ ଗ୍ରନ୍ଥଟି ଉଚିତ ମୂଲ୍ୟରେ କ୍ରୟ କରାଯିବାର ବ୍ୟବସ୍ଥା କରାଯିବ ।

ଯଦି କୌଣସି ବ୍ୟକ୍ତି ମୂଳ ପୋଥିଟିକୁ ଦେବାଲାଗି ଅନିଚ୍ଛୁକ ଥାଆନ୍ତି, ତାହାହେଲେ ସାଂସ୍କୃତିକ ବ୍ୟାପାର ବିଭାଗ ତରଫରୁ ନକଲ କରାଇ ଅଣାଯିବାର ବ୍ୟବସ୍ଥା କରାଯିବା ସଙ୍ଗେ ସଙ୍ଗେ ପୋଥିର ମାଲିକଙ୍କୁ ଯଥୋଚିତ ପାରିତୋଷିକ ଦିଆଯିବ । ଜନସାଧାରଣ ଏଥିପାଇଁ ସାହାଯ୍ୟ ଓ ସହଯୋଗ କରିବାକୁ ଅନୁରୋଧ ।







ବୈଶାଖିର ଖାଂଜ ପିଟୁଛି । ହିଂତାଳର ହିଂ ହିଂ ଶବଦରେ କାନ ଅତସ୍ତ ପଡୁଛି । ବହୁ ଦୂରରୁ ଭସି ଆସୁଛି କପୋତୀର ବ୍ୟାକୁଳ କାନ୍ଦଣା । ନୀଡ଼ହରା କପୋତର ବ୍ୟାକୁଳ କାନ୍ଦଣାର ତାଳେ ତାଳେ ବାହୁନ ଉଠୁଛି ସାଶ୍ୱଥା । ଏଇ କାଲି ସକାଳ ପରି ଲାଗୁଛି—ତା'ର ଶାଶୁ ଅମଳ କଥା । କୁନ୍ଦଲ କୁନ୍ଦଲ ଚେହେରା । ବୟସ ବେଳ । ଏଇ ଦେହଟାରେ କେତେ ତାକତ ଥିଲା ସତେ ? ବାଶ ଖଣ୍ଡକରେ କେତେ ଶାଗ ପତର ସ୍ୱର୍ଗି ପଡୁଥିଲେ । କନ୍ତୁ ନ ହେଲେ ନାତି ବା କଖାରୁ ଗଛଟାଏ ପୋତି ଦେଲେ କେଇଟା ଦିନରେ ଫଳକଢ଼ିରେ ଲଦି ହୋଇଯାଏ । ଅମୃତଭଣ୍ଡା ଗଛ ଦୁଇ ସ୍ପର୍ଶଟାରେ ମୂଳରୁ ଅଗ ପର୍ଯ୍ୟନ୍ତ ଗୋଟି ଗୋଟି ହୋଇ ଗୁନ୍ଧି ହୋଇଯାଏ । ସବୁ ଏଇ ହାତରେ ଲଗାଏ । ନଧୁମ୍ ଖରାରେ ପାଣିଦେଇ ଗଛଗୁଡ଼ିକୁ ବଞ୍ଚାଏ । ସମ୍ପାଲ ଶାଗରେ ତା'ର ଭଙ୍ଗା କୁଡ଼ିଆଟା ହସି ଉଠେ । କିନ୍ତୁ—

ଆଜି ସେ ନୀଡ଼ହରା କପୋତୀ । ଏଇ ବରଗଛଟା ତା'ର ମୂକ ସାକ୍ଷୀ । ସୁନି ହିମ', କୋଳକୁ ଚାଲେଣି । ଦକ୍ଷିଣା ପବନ ଜୋରରେ ପିଟୁଛି ; ଲୁହନାଳ ଏକୋଠ ଭଣ ଗଛ ମୂଳଟାରେ ଚୁଲି ଟେକିଛି ସାଶ୍ୱଥା, ହେଲେ ଉହ୍ନକରେ ଚୁଲିଟି ଜଳ ପାରୁନି । ସେଇ ଧୋଁଇରେ ତା'ର ସବୁଦିନର ସମ୍ପତ୍ତି ଖିଲଭର ବାସନ ଆଉ ହାଣ୍ଡି ଠେକ କେଇଟା ଗଡ଼ୁଛି ।

ଧ୍ୟାନମଗ୍ନା ତପସ୍ୱୀ ନୀପରି ଚନ୍ଦ୍ରା ଶଯ୍ୟାରେ ବସି ଗୁଣୁଛି ସାଶ୍ୱଥା । ମଲିକ ବୁଢ଼ାର ବାଡ଼ି ଠକ୍ ଠକ୍ ଶବ୍ଦ ସଙ୍ଗେ ଖଣ୍ଡି କାଶ ଶୁଭିଲା । ଚମକି ପଡ଼ିଲା ସାଶ୍ୱଥା । ମଲିକ ବୁଢ଼ାର ସ୍ନେହ ସୂଚକ ସମ୍ବୋଧନ—ମା' ଉଜନ ଫେରି ନାହିଁ କି ? ଓଡ଼ଣା ତଳୁ ଉତ୍ତର ଦେଲା ହେଁଟ ନାହିଁଟିଏ ।

ଗୁଡ ଏ ପର୍ଯ୍ୟନ୍ତ ହାଣ୍ଡିରେ ଲେଉଟିନି । ଉର ଚର ହେଲା ସାଶ୍ୱଥା । ସକାଳ ପହରୁ ଗଲେଣି ଅସ୍ଥି ପହଞ୍ଚିଲେ କ'ଣ ସେ ବାଡ଼ି ଦେବ ? ଏତେ ଦାନ୍ତଗେଞ୍ଚି ପୁଣି ପହଞ୍ଚିବାକୁ ଥିବ ! ଚୌକୁ ପାଣି ଫଟେଇ,

ଭୁଣ୍ଡଖାଲ ମୁଣ୍ଡରେ ମାରି ପିଠି ପେଟକୁ ଅଣ୍ଟୁନ । ମୁଣ୍ଡ ଗୁଞ୍ଜି ବାକୁ କୁଡ଼ିଆଟା ଥିଲେ ମନରେ ଟିକେ ଦମ୍ଭ ଆସନ୍ତା, ସେତକ ତା' ଭାଗ୍ୟରେ ଜୁଟିଲାନି । ଜମି ମାଲିକ କ'ଣ ନ କଲେ ସତେ ? ଧନ ଜନ ଗୋପଲକ୍ଷ୍ମୀ କୋଉଥିରେ ତ ଅଭାବ ନାହିଁ । ଜମି କେଇଗୁଣ୍ଠ ମୁରୁଛୁ ପାରିଲେନି । ଶାଶୁଙ୍କର ବର୍ଷକ କଟିଲା ତାଙ୍କର ବେଠି ପାଇଟି କରି । ତାଙ୍କ ଅମଳରେ ଦୁଃଖ କରି ଯଦି ଗୋବର ଗାଇଁଟା ପଇସାରେ ଦୁଇ ବଖରା କଚ୍ଚା ଘର କରିଥିଲେ, ଶେଷରେ ତା' ଉପରେ ଆଖି ପଡ଼ିଲା ।

ଉପରେ ଖୋଲା ଆକାଶ । ତଳେ ମା ବସୁଧା । ସବୁ ଜୀବମାନଙ୍କୁ ଆହାର ଦେଇ କେତେ ଧଡ଼ମଡ଼ି ସହୁଛି ସତେ ? ସବୁଦିନଠାରୁ ଆଜ ନାଲି କପସି ବେଶୀ ଦାମ ଦଉଛନ୍ତି । ଭଜନର ଆଦରର ନାଲି କପସି । ସୁଖ ଦୁଃଖର ସାଥୀ । ତା' ପେଟ ନ ପୁରିଲେ ହସି ହସି ସହିଯାଏ । ନାଲି କପସି ପେଟକୁ କେବେ ଭୁଖା କରିନି । ହଳ ମହିଷରେ କେବେ ଅଟକେନି କାମ—କପସିଟା ଉପରକୁ ମୁଣ୍ଡଟେକି ରହି ଯାଉଛି । ଉପରକୁ ଚାହିଁଲା ଭଜନ । ବେଳ ଭର୍ ଭର୍ ହେଲାଣି । ମନେ ପଡ଼ିଲା କେତେବେଳୁ ମଲିକ ବୁଢ଼ା ତାକୁ ଅପେକ୍ଷା କରିଥିବ । ହଳ ଫିଟାଇଲା ଭଜନ । ଘରବାର ଛିଅ ଯୋଉଥିଲା । ଆଗେ ଆଗେ ଚାଲିଛନ୍ତି ତା'ର ସୁଖ ଦୁଃଖର ସାଥୀ ନାଲି କପସି । ମୂରୁଖ ଲୋକ, ସେ କ'ଣ ବା ଜାଣିବ ସରକାରଙ୍କ ଆଇନ କାନୁନ୍ ବିଷୟରେ । ମନଟା ତା'ର ଉଚ୍ଛନ୍ନ ହେଲା । ସେଦିନ ମଲିକ ବୁଢ଼ା ଖାସା କଥାଟାଏ କହୁଥିଲା ତ—ତର ତର ହେଲା ଭଜନ ।

ହଠାତ୍ ମଲିକ ବୁଢ଼ା ସାଙ୍ଗରେ ଭେଟ ହୋଇଗଲା । ଭଜନ ପିଲାଙ୍କ ପରି କଇଁ କଇଁ ହୋଇ କାନ୍ଦି ଉଠି ତାକୁ କୁଣ୍ଢେଇ ପକେଇଲା । ବାବୁ ! ଏ ଯୋଡ଼ି ଖଣ୍ଡ ଧନଟା ତଡ଼େଇ ଶରୁଗୁଣି ଦଶାରେ ରହୁଛନ୍ତି । ମୋ ପିଲାଏ ଗଛ ମୂଳେ, ଖସିଗଲା ବାବୁ । ପାଣି ଦି ଟୋପା ବର୍ଷା ହେଲେ କାଁ ପିଣ୍ଡାକୁ ଉଠିବ । ଜମି ମାଲିକର ଠାକୁରେ ତ କୋଉଥିରେ ଭଣା କରି ନାହାନ୍ତି । ସଂସାରରେ ଆଉ ଧର୍ମ ନାହିଁ । ସବୁ ଠାକୁର ପଥର ହେଲେଣି ।

ମଲିକ ବୁଢ଼ା ମୁରବି ଲୋକ । କଥା କହିଲେ ସବୁରି ମନକୁ ପାଇଯାଏ । ପାକୁଆ ପାଟିକୁ ମେଲାକରି ହୋ ହୋ ହସି ଉଠିଲା ସେ । ଏ ଯୁଗରେ ଆଉ ଧର୍ମର ଅନ୍ଧ ବିଶ୍ୱାସ ଚଳିବନିରେ ଭଜନ ? ସରକାର ଆମପାଇଁ କେତେ ସୁବିଧା ଦେଲେଣି । ସେ ସୁବିଧାର ସୁଯୋଗ ନେବା ନାହିଁ କାହିଁକି ? କେତେଥର ତ କହିଲିଣି । ଅସୁବିଧା କଥାଟା ଟିକେ କଲେକ୍ଟର ସାହେବଙ୍କ କାନରେ ପକେଇଦେ । ସେଦିନ ସରପଞ୍ଚ ବାବୁ ଯେଉଁ କଥା କହିଲେ କିଛି ହେଲେ ଏ ପର୍ଯ୍ୟନ୍ତ ଭଲ ନା ଶୁଣିଲୁ । ସରପଞ୍ଚ ବାବୁଙ୍କି ଖାଲି ଭଲ ମଣିଷରେ ଭଜନ । ଏମିତିଆ ମଣିଷ ଆମେ କେବେ ପାଇବୁନି । ଖାଲି ଆଖିରୁ ଲୁହ ଝରେଇଲେ କିଛି ହେବନି କି ଜମି ମାଲିକ ଶୁଣିବନି । ଆରେ କଥାରେ ଅଛି ପରା—ଆବେ ପରଶୁ ଯାବେ ପରଶୁ, ବାବୁ ପରଶୁରାମ, ପଇସା କ୍ୟା ନଜରେ କାମ । କହୁଁ କହୁଁ ପନ୍ଦର ଦିନ ବିତିଗଲା । ପୁଅଝିଅଟାଙ୍କୁ ନେଇ କେତେଦିନ ଗଛ ମୂଳଟାରେ ପଡ଼ିଥିବୁ । ମୁଖ ନ ଖୋଲିଲେ ଦୁଃଖ ଘୁଞ୍ଚିବନିରେ ପୁଅ । ଆଜି କାହିଁକି ତୋ କଥାଟା ମନେ ପଡ଼ି, ମନଟା ଯାଣ୍ଡି ତରଟି ହେଲା । ଏବେଳି ସାଙ୍ଗରେ ନେଇ କଲେକ୍ଟର ସାହେବଙ୍କୁ ଦେଖାକଲେ ଭଲ ହେବ । ଖରାଦିନ ବୋଲି ଗଛମୂଳେ ଆଶ୍ରା କରିଛୁ—ବର୍ଷାହେଲେ କ'ଣ କରିବୁ ? କଥାବାର୍ତ୍ତାର ଲହରରେ ପହଞ୍ଚି ଗଲା ସେ ଭଜନର ଆଶ୍ରୟ ଜାଗାରେ ।

ମୁରବି ଡାକିଲେ ମଲିକ ବୁଢ଼ା କହିଲା—ନେଏଲି ଦିହଟା ବାଢ଼ିଦେ ମା ! ଏବେ ଭଜନ କଲେକ୍ଟର ସାହେବଙ୍କ କୋଠିକି ଯିବ । ଏଠିତ ଗଛମଳେ ପଡ଼ିଛୁ, ଆଜି ରାତିଟା ତାଙ୍କ ବାରଣ୍ଡାରେ ପଡ଼ିଯିବ । ସକାଳୁ ଉଠି ସାହେବଙ୍କୁ ଦେଖାକରି ତା' ଦୁଃଖ କହିବ ତେଣିକି ତା' କର୍ମ କଥା । ଆମେତ ଚେଷ୍ଟା କରିବା । ଓଢ଼ଣା ତଳେ କାନ୍ଦି କାନ୍ଦି କାନ୍ଦୁଥିଲା ସାରିଆ । ହାତେ ଲମ୍ବର ଓଢ଼ଣା ଟାଣି ଓଲଟି ହେଲା ସେ । ଲସର ପସର ହୋଇ ଭାତ ସାଙ୍ଗକୁ ବେସର ଦିଆ ତିଅଣ ବାଢ଼ିଦେଲା । ଏକୁଟିଆ ଭାତପାଖେ ବସିପାରୁ ନଥିଲା ଭଜନ । ହାଣ୍ଡିରେ ଆଉ ଭାତ ନଥିବ ପରା । ଏଇଥିରୁ ଅଧେ ଭାତ ତିଅଣ ଦାଦାଙ୍କୁ ବାଢ଼ିଦେ ସାରିଆ ? ମଲିକ ବୁଢ଼ା କହିଲା—ଆରେ ଏବେତ କାମରୁ ଫେରି ପେଟେ ପୁରେଇ ଦେଇ ଆସିଲି । ଆଉ ଭୋକ ଆସିବ କୁଆଡ଼ୁ ।

ଭଜନ ସେତକ ପାଖ କ ଛ ଗୁଣ୍ଡ'ରେ ପକେଇ ଦେଇ ସିଲଭର ଚୋଟାରୁ ଅଧ ଚୋଟାଏ ପାଣି ଢକ ଢକ କରି ପିଇଗଲା । ଖାଇଦେଲା ପରେ ଦେହଟା କେମିତି ଆହ୍ଲାଦ ହେଇଲା ପରି ଲାଗିଲା । ସକାଳ ପହରୁ ପଖାଳ ବେଳଏ—ଦିନ ଗୋଟାଏ ଗଡ଼ିଲାଣି । ତଣ୍ଡି ପାଟି ଶୁଖି ଯାଉଥିଲା । ପେଟ ଭୋକରେ ଆଉଣ୍ଠି ହେଉଥିଲା ! ସବୁଦିନେ ପାଖରେ ମୁଢ଼ି ଚୁଡ଼ା ବାନ୍ଧି ନେଉଥିଲା । ଆଜି ସେତିକିବି ନାହିଁ । ଗଛମୂଳେ କ'ଣ ବା ସେ କରିବ । ସାରଥି ବସ୍ତିର ଏଇ ପନ୍ଦରଟା ଦିନରେ ଜଣା ପୋଡ଼ିଲାଣି । କ'ଣ ସେ କରିବ—ପାଖରେ ଯାହା ପଇସା ଥାଆନ୍ତା ଜମି ଅସଲ କେଉଁଠୁ କିଣି ପାରନ୍ତାଣି । ଗୋଡ଼ ପାହୁଲେ ହଳଧରୁ ମୂଲ ଲାଗିବ ତିନି ଟଙ୍କାରେ । ବଳଦ ଦୁଇଟିଙ୍କର ଦୁଇ ଟଙ୍କା ତା'ର ଟଙ୍କାଏ । ଛାତି ଫଟେଇ ଦୀର୍ଘଶ୍ୱାସ ବାହାରି ଆସିଲା—ଯେତେ କଲେ ଖଟିଲେ କ'ଣ ଜମି ମାଲିକ ବୁଝିବ ? ଓଲଟି ଗାଳି ଫଜିତ ।

ଆଶା ବୈତରଣୀ ନଦୀରେ ଭାସି ଚାଲିଛି ସାରଥି । ସତେ କ'ଣ ଠାକୁରେ ଶୁଣିବେ, କଲେକ୍ଟର ସାହେବ ଏ ଗରିବ କଥା ବୁଝିବେ ? ସବୁଦିନର ଲୁଣ ତେଲର ସଂସାରଟି ତା'ର ଭାସି ଯିବ ? ପୂର୍ବ ପୁରୁଷ ଭିଟା ମାଟିକୁ ସତେ କ'ଣ ଫେରି ପାଇବ ? ଏଇ ମଲିକ ବୁଢ଼ା କଥା—ଶାଳୁ କହନ୍ତି ସେ ଜଣେ ପର ଉପକାରୀ ମଣିଷ । ଅନ୍ୟ ଦୁଃଖ ପାଇଲେ ସେ କେବେ ସହି ପାରେନା । ବଡ଼ ବଳୁ ସାହାସୀ ଲୋକଟି । ଠାକୁରେ ତା'ର ବଡ଼ପଣକୁ ବଢ଼ନ୍ତ କରନ୍ତୁ ।

ଦୂରରୁ ଖଙ୍କାରି ଶୁଭିଲା ମଲିକ ବୁଢ଼ାର । ଭଜନର ଶୁଖିଲା ମୁଖ ମଣ୍ଡଳରେ ହସର ଲହର ଖେଳୁଛି । ସାରଥି ଅନୁମାନ କରିନେଲା—ନିଶ୍ଚୟ କିଛି ଶୁଭ ଖବର ହୋଇଥିବ । ଉତ୍କଣ୍ଠା ବଢ଼ିଲା । ମଲିକ ବୁଢ଼ା ଓ ଭଜନ ଦୁଇଜଣ ଖୁବ୍ ସତର୍କ ସ୍ୱରରେ ଆଲୋଚନା କରିବାରେ ଲାଗି ପଡ଼ିଲେ । କାନ ପାତିଲା ସାରଥି ସେ ଆଡ଼କୁ ।

ମଲିକ ବୁଢ଼ାର ଗାମ୍ଭୀର୍ଯ୍ୟ ପୂର୍ଣ୍ଣ କଥା । ଭଜନକୁ ଦେଇ ଚାର୍ଜସିଟ୍ କରେଇବା ପାଇଁ ବାରମ୍ବାର ତାଗିଦ୍ । ଖାଲି କଲେକ୍ଟର ସାହେବଙ୍କୁ ଦେଖା କରି ଦରଖାସ୍ତ ଦେଇ ଆସିଲେ କାମ ହୋଇ ଯିବନାହିଁ ଭଜନ ! କେତେ କାମରେ ବ୍ୟସ୍ତ ରହୁଛନ୍ତି—ଏମିତି ଆମ ଭଳି କେତେ ଲୋକ ସବୁଦିନେ ଦେଖା କରୁଛନ୍ତି । ଏଇଟା ଗୋଟିଏ କଥା ହେଲାନି ଯେ ସାହେବ ମନେରଖି ବସିବେ । ସରପଞ୍ଚ ବାବୁଙ୍କୁ ଯାଇ ଦେଖା କରିଦେ ଆଉଥରେ । ଆମର ତ ଆଉ ସାହା ଭରସା କେହି ନାହିଁ । ସେତ ଖୁବ ଭଲ ମଣିଷ । ସାହେବଙ୍କ ଦେଖା କରି ଆସି ତାଙ୍କୁ ଜଣେଇଲେ ସେ ସବୁ ବ୍ୟବସ୍ଥା କରି ଦେବେ । ଯା—ଦେରି ବାହାରି ପଡ଼ । ଧନିଆ ଲୋକ—ପକାଙ୍କୁ ସଥଲ ଯାଇ ଖବର ଦେଇ ଆସିଲେ ଭଲ ।

ଦିନପରେ ଦିନ ଗଡ଼ି ଚାଲିଲା । କଲେକ୍ଟର ସାହେବଙ୍କୁ ସାତଦିନ ତଳେ ଦେଖା କରି-ଥିଲା । ସରପଞ୍ଚ ବାବୁ କହୁଥିଲେ ଆଜି ତା' ଅବସ୍ଥା ଦେଖିବାପାଇଁ ଏସ୍. ଡି. ଓ. ସାହେବଙ୍କୁ ପଠେଇବେ । ଆଉ କେତେ ବାବୁ ଭାୟା ଆସିବେ । ଭଜନର ଗୋଡ଼ ତଳେ ଲାଗୁନ । ପଡ଼ଶାଘରୁ ଚୌକି, ସତରଞ୍ଜି ଯୋଗାଡ଼ କରିବାରେ ଲାଗି ପଡ଼ିଛି । ରାସ୍ତା ଉପରେ ଗାଡ଼ି ମଟର ଶବ୍ଦ ଶୁଣିଲେ ଚମକି ପଡ଼ୁଛି ସେ—ହେଇ ଗାଡ଼ି ଆସୁଛି କି ? ଗାଁଟା ସାରା ପ୍ରଚାର ହେଇଗଲା ଅଫିସର ସବୁ ଆସିବେ—କେତେ ସାକ୍ଷୀ ପ୍ରମାଣ ନିଆଯିବ । ଦରପଡ଼ ମଲଟାରେ ଲୋକ ଗହଳି । ଏସ. ଡି. ଓ. ଙ୍କ ସରକାରୀ ଗାଡ଼ି ଲାଗିଲା । ଏସ. ଡି. ଓ., ତହସିଲଦାର, ରେଭିନ୍ୟୁ ଇନସ୍‌ପେକ୍ଟର, ସରପଞ୍ଚ ବାବୁ ସମସ୍ତେ ଚାଲିଲେ ତା'ର ପୂର୍ବ ପୁରୁଷର ଭିଟାମାଟି ଉପରକୁ, ଯେଉଁଠିକି ତା'ର ସବୁଦିନର ଦୁଇଁଗା କୁଡ଼ିଆଟି ଥିଲା—ଜମି ମାଲିକ ଘରର ଚଣ୍ଡ ବର୍ଷ ରହି ନାହାନ୍ତି । ସବୁ ଦାଣ ସଙ୍ଗେ ସମାନ କରି ଦେଇଛନ୍ତି । କୁଟାଖିଏବି ସେଠାରେ ପଞ୍ଜନ । ମା' ଅମଳର କବାଟ, ଚୌକାଠ, ଖଟ, ଦାଉଣ ସବୁ ବୋହି ନେଇଛନ୍ତି ।

ଛଳ ଛଳ ଆଖିରେ ଏସ୍. ଡ଼ି. ଓ. ଙ୍କ ପାଦତଳେ ଲୋଟି ପଡ଼ିଲା ଭଜନ । ଏ ଗରିବର ସାହା ଭରସା କେହି ନାହିଁ ଆଜ୍ଞା— ଗରିବର ମା’ ବାପ ଆପଣ—ଆଉ କିଛି କହି ପାରିଲାନି । ଦୁଃଖ ଦୁଃଖ ନର୍ଯ୍ୟାତନାର ଚିହ୍ନ ସ୍ୱରୂପ ଦୁଇ ଆଖିରେ ଲୁହ ଟୋପା—ତା’ର ଯେପରି ଶେଷ ନାହିଁ ।

କୋର୍ଟ ବସିଲା । ଦୁଇ ପକ୍ଷରୁ ସାକ୍ଷୀ ପ୍ରମାଣ ନିଆଗଲା । ବାର ବର୍ଷରୁ ଅଧିକା ସମୟ କିଏ ରହିଲେ ଜମିଟିର ଦଖଲ ସ୍ୱତ୍ୱ ହୋଇଯିବ । ଏସ୍. ଡ଼ି. ଓ. ସାହେବ ପ୍ରମାଣ ପାଇଲେ ଏ ଜମି ଉପରେ କୋଡ଼ିଏ ବର୍ଷରୁ ଅଧିକ ରହିଛି । ସାହେବ ଭଜନକୁ ସାନ୍ତ୍ୱନା ଦେଲେ ପନ୍ଦର ଦିନ ଭିତରେ ସବୁ ସମାଧାନ କରିବେ । ବିଦାୟ ନେଲେ ଏସ୍. ଡ଼ି. ଓ. ସାହେବ । ବିଦାୟୀ ସରକାରୀ ଜିପ୍‌କୁ ଚାହିଁ ରହିଥିଲା ଭଜନ । ଏ କଥା ସବୁ ଦେଖି ଶୁଣି ଯେପରି ନିଜକୁ ବିଶ୍ୱାସ କରି ପାରୁନଥିଲା । ସତେ କ’ଣ ଠାକୁରେ ଦୟା କଲେ ତା’ର ପୂର୍ବ ପୁରୁଷର ଭିଟା ମାଟିକୁ ଫେରି ପାଇବ ?

* * * *

ରଜ ପରବ । ଗାଁରେ ପିଠା ପଣା ଦୋଳି ଖେଳ, ଡୁ ଡୁ ଖେଳରେ ଗୁରିଆଡ଼ କମ୍ପୁଛି । ଝିଅ ବୋହୂମାନେ ବିଭିନ୍ନ ରଂଗ ବେରଂଗର ଶାଢ଼ୀ ପିନ୍ଧି ମନ ଖୁସିରେ ବୁଲୁଛନ୍ତି । ସାରିଆ ଏତେବଡ଼ ପରବରେ ତା’ ପାଇଁ କି ଝିଅ ପାଇଁ ଗଣ୍ଡେ ନୂଆ କରିପାରିନି—କି ପିଠା ପଣା କିଛି କରି ପାରିନି । ତଥାପି ସେ ଅପୂର୍ବ ଆନନ୍ଦରେ ଆତ୍ମହରା ହୋଇ ପଡୁଛି— ତା’ର ପୂର୍ବ ପୁରୁଷର ଭିଟା ମାଟିକୁ ଫେରି ପାଇଛି ! ନିଜ ହାତରେ ଶାଗ ଗଛ ଲଗେଇଛି । ସେଗୁଡ଼ିକ ବୃକ୍ଷତ୍ରେ ଲେଖେଁ ବଢ଼ି ଚାଲିଛି । ଶାଗୁଆ ରଂଗର ଶାଗ ପତ୍ରଗୁଡ଼ିକ ଉପରେ ବୁହାଇ ବୁହାଇ ପବନ ବହି ଯାଉଛି । ପବନ ସହିତ ତାଳଦେଇ ଶାଗ ପତ୍ରଗୁଡ଼ିକ ଲହସି ଯାଉଛି— ସାରିଆ ଏକ ଅପୂର୍ବ ଅନୁଭୂତିରେ ଆତ୍ମହରା ହୋଇ ପଡ଼ୁଛି—ଯେମିତି ତା’ର ଆଜି ନୂଆ କୁଡ଼ିଆରେ ଶତ ଅନେଇସାରି ଜନ୍ମ ।



ସରପଞ୍ଚ, ବିଦ୍ୟାଧରପୁର
ଗ୍ରାମପଞ୍ଚାୟତ, କଟକ

---

## ବକେୟା ତଗାବୀ ଋଣ ପରିଶୋଧ ପାଇଁ ରିଆତି

ବହୁବର୍ଷମାନଙ୍କରେ ତଗାବୀ ଋଣ ଟଙ୍କା ଅନେକ ଲୋକଙ୍କ ଉପରେ ବକେୟା ପଡ଼ିଥିବା ଜଣାଯାଉଛି । ଉକ୍ତ ଋଣ ଉପରେ ସୁଧ ବଢ଼ିବାରେ ଲାଗିଛି ଓ ଯଦି ତୁରନ୍ତ ଋଣ ପରିଶୋଧ କରି ନଯାଏ, ତେବେ ସଂପୃକ୍ତ ଋଣ ଗ୍ରହୀତାମାନେ ପରିଶେଷରେ ବହୁ ଅସୁବିଧାର ସମ୍ମୁଖୀନ ହେବେ । ଋଣ ଗ୍ରହୀତାମାନେ ଯେପରି ଋଣ ପରିଶୋଧ କରିବାଲାଗି ସମର୍ଥ ହୋଇପାରିବେ, ସେଥିନିମନ୍ତେ ୧୯୭୭ ସେପ୍ଟେମ୍ବର ୩୦ ତାରିଖ ପୂର୍ବରୁ ଋଣ ପରିଶୋଧ କରାଗଲେ ତଗାବୀ ଋଣରେ ସୁଧ ମୂଳଧନଠାରୁ ଅଧିକ ପଡ଼ିବନାହିଁ ବୋଲି ସରକାର ନିଷ୍ପତ୍ତି ନେଇଛନ୍ତି । ଅନ୍ୟପକ୍ଷରେ ସୁଧ ସମ୍ବନ୍ଧୀୟ ଋଣ ଗ୍ରହୀତାମାନେ ନିର୍ଦ୍ଧାରିତ ତାରିଖ ପୂର୍ବରୁ ମୂଳଧନ ଓ ତାହାର ସମପରିମାଣର ଟଙ୍କା ସୁଧ ଆକାରରେ ପରିଶୋଧ କରି ସମୁଦାୟ ଋଣମୁକ୍ତ ହୋଇ ପାରିବେ । ଯେଉଁ ସ୍ଥଳରେ ସାର୍ଟିଫିକେଟ ମାମଲା ରୁଜୁ କରାଯାଇଛି ଏବଂ ସୁଧର ପରିମାଣ ମୂଳଧନଠାରୁ ଅଧିକ ହୋଇଛି ସେଭଳି କ୍ଷେତ୍ରରେ ଯଦି ଋଣ ଗ୍ରହୀତା ସଂଶୋଧିତ ହାରରେ ମୂଳଧନର ଦୁଇଗୁଣ ୧୯୭୭ ସେପ୍ଟେମ୍ବର ୩୦ ତାରିଖ ମଧ୍ୟରେ ପରିଶୋଧ କରନ୍ତି, ତେବେ ସାର୍ଟିଫିକେଟ ମାମଲାରେ ଦର୍ଶାଯାଇଥିବା ଟଙ୍କାର ପରିମାଣ ସଂଶୋଧନ କରାଯିବ ।

୧୯୭୭ ସେପ୍ଟେମ୍ବର ୩୦ ତାରିଖ ପରେ ଋଣଗ୍ରହୀତାମାନଙ୍କୁ ଉପରୋକ୍ତ ରିଆତି ଆଉ ଦିଆଯିବ ନାହିଁ । ବହୁସଂଖ୍ୟକ କୃଷୀ ଏଭଳି ରିଆତିର ପୂର୍ଣ୍ଣ ସଦୁପଯୋଗ କରି ବହୁଦିନର ବକେୟା ଋଣରୁ ନିଜନିଜକୁ ମୁକ୍ତ କରିବେ ବୋଲି ସରକାର ଆଶା ପୋଷଣ କରନ୍ତି ।





ଶ୍ରୀ ଗୋପାଳ ଚନ୍ଦ୍ର ମିଶ୍ର

ଜୀବ ଜଗତର ବଡ଼ ବଡ଼ ପ୍ରାଣୀମାନଙ୍କ କଥା ପଡ଼ିଲେ ହାତୀ, ହାଙ୍ଗର, ଜଳହସ୍ତୀଙ୍କ ଭଳି ମନେପଡ଼େ । ହେଲେ ଅତି ନଗଣ୍ୟ ଜୀବଙ୍କ ମଧ୍ୟରୁ କେତେକ ସେମାନଙ୍କ ପ୍ରଭାବରେ ଆକର୍ଷଣୀୟଭାବେ ଅତିକାୟ । ଉଦାହରଣ ସ୍ୱରୂପ ପ୍ରୋଟୋଜୋଆ ଜାତିର ଜୀବମାନେ ଏକକୋଷି । କେତେକ ଜାତିର ପ୍ରୋଟୋଜୋଆ ମଣିଷ ଶରୀରରେ ପ୍ରବେଶ କରି ରୋଗ ଉତ୍ପନ୍ନ କରନ୍ତି । ମ୍ୟାଲେରିଆ, ଆମ୍‌ବକ୍ ଡାଇସେଣ୍ଟ୍ରି ଆଦି ରୋଗର ଜୀବାଣୁଗୁଡ଼ିକ ଏହି ପର୍ଯ୍ୟାୟର । ସେମାନଙ୍କ ମଧ୍ୟରୁ ଅଧିକାଂଶ ଏତେ କ୍ଷୁଦ୍ର ଯେ ତାଙ୍କୁ ଖାଲି ଆଖିରେ ଦେଖି ହେବ ନାହିଁ । କିନ୍ତୁ ସେମାନଙ୍କ ମଧ୍ୟରେ ମଧ୍ୟ ଅତିକାୟ ଅଛନ୍ତି । ମଣିଷଠାରେ କାଳାଜ୍ୱର ରୋଗ ଜନ୍ମାଉଥିବା ଜୀବାଣୁ ଏକକୋଷିମାନଙ୍କ ମଧ୍ୟରେ କ୍ଷୁଦ୍ରତମ, ଇଞ୍ଚକରେ ୨୫,୦୦୦ ଧାଡ଼ିରୁ ରହେ । ସବୁଠାରୁ ବଡ଼ ଏକକୋଷଜୀବ ହେଉଛି ମାଛ ପେଟରେ ରହୁଥିବା ପରାଙ୍ଗଭୋଜୀ ମେକ୍ରୋବୋଲସ୍ । ଏମାନଙ୍କ ଲମ୍ବା ପ୍ରାୟ ତିନି ଇଞ୍ଚ ପର୍ଯ୍ୟନ୍ତ ହୋଇଥାଏ । ପ୍ରାଣୀତତ୍ତ୍ୱବିତ୍‌ମାନେ କହନ୍ତି ଯେ ଦୀର୍ଘତମ ପ୍ରୋଟୋଜୋଆର ଆକାର କ୍ଷୁଦ୍ରତମ ପ୍ରୋଟୋଜୋଆର ଆକାରର ଦୁ'ଲକ୍ଷ ଗୁଣ ହେବ ।

ଜେଲି ଫିସ୍ ବା ସ୍ୱଚ୍ଛ ଛତ୍ରର ଶାରୀରିକ ଗଠନ ଖୁବ୍ ସରଳ, ଏହାର ପ୍ରାୟ ଶତକଡ଼ା ନବ୍ୟାନବେ ଭାଗ ପାଣି । ଗୋଟିଏ ଜେଲି ଫିସ୍‌ର ଦେହ କହିଲେ ଜେଲି ଭଳିଆ ଲଟପଟିଆ ଦେଖାଏ ଗୋଲକାର ମାଂସଳପିଣ୍ଡ । ଏହାକୁ ବେଲ୍ ବୋଲି କୁହାଯାଏ । ବେଲ୍‌ରୁ ତାହାର ଅଧିଆଏ ଦରକାରୀ ଭଳିଆ କାମଗୁଡ଼ିଏ । ଦେହର ଗଠନ ଏତେ ସରଳ ହୋଇଥିଲେ ମଧ୍ୟ କେତେକ



ଜେଲି ଫିସ୍

ଚିତ୍ର - ୮

ଜେଲିଫିସ୍‌ଙ୍କ ଆକାର ଖୁବ୍ ବଡ଼ । ମାସାଚୁସେଟ୍ସ ଉପକୂଳରୁ ମିଳିଥିବା ଏକ ଜେଲିଫିସ୍‌ର ଦେହର ପରିଧି ସାଢ଼େ ସାତ ଫୁଟ୍ ଏବଂ ବାହୁଗୁଡ଼ିକର ଦୈର୍ଘ୍ୟ ଶହେ କୋଡ଼ିଏ ଫୁଟ୍‌ରୁ ବେଶି ଥିଲା ବୋଲି ପ୍ରଖ୍ୟାତ ଜୀବତତ୍ତ୍ୱବିତ୍ ଅଧ୍ୟାପକ ଲୁଇସ୍ ଆଗାସିଜ୍‌ଙ୍କ ବିବରଣୀରୁ ଜଣାଯାଏ । ବାରଫୁଟ ପରିଧିର ବେଲ୍ ଭଳିଆ ଜେଲିଫିସ୍ ଥରେ ଅଧେ ଧରା ହୋଇଛନ୍ତି । ଏବକାର ବା ଲୁପ୍ତ ହୋଇଯାଇଥିବା କୌଣସି ଜୀବର ଏତେ ଲମ୍ବା ବାହୁ ଥିବାର ଜଣା ନାହିଁ । ଲମ୍ବ ଲମ୍ବ, ହାତକୁ କର୍ଷିଲ ଲାଗୁଥିବା ଜିଆ, ଫିତାକୃମି, ଗୋଲ କୃମି ଆଦି ଅନେକ ପ୍ରକାରର କୀଟ ଅଛନ୍ତି । ସମୁଦ୍ରରେ ରହୁଥିବା ପ୍ରୋବୋସସ୍ ବା ନେମରଟିନ୍ ସେମାନଙ୍କ ମଧ୍ୟରୁ ଅନ୍ୟତମ । ଏମାନେ ନିଜ ଇଚ୍ଛାନୁଯାୟୀ ଦେହକୁ ଲମ୍ବାଇ ଦେଇପାରେ ବା ସଙ୍କୁଚିତ କରି ଦେଇପାରେ । ପୂର୍ଣ୍ଣ ବିସ୍ତାରିତ ଅବସ୍ଥାରେ ଏହାର ଲମ୍ବ ଅଶି ଫୁଟ୍‌ରୁ ନବେ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ପ୍ରୋବୋସିସ୍ ସାଙ୍ଗେ ଦୈର୍ଘ୍ୟଭାବରେ ପ୍ରତିଦ୍ୱନ୍ଦ୍ୱିତା କରେ ଫିତା କୃମି । ଫିତା କୃମି ବହୁ କିସମର । ଯଥା-ଯଥାଭାବେ ସିଦ୍ଧ ହୋଇ ନଥିବା ଗୋ-ମାଂସ ବା ଶୁକର ମାଂସ ଖାଇଲେ ମଣିଷ ବେଳେବେଳେ ଫିତା କୃମି ଦ୍ୱାରା ଆକ୍ରାନ୍ତ ହୋଇଥାଏ । ଗୋ ମାଂସରେ ଥିବା ଫିତା କୃମି ଓ ମାଛ ପେଟରେ ରହୁଥିବା ଫିତା କୃମି ଅନ୍ୟାନ୍ୟ ଫିତା କୃମିଙ୍କ ଠାରୁ ଖୁବ୍ ଲମ୍ବ । ମାଛ ପେଟରେ ରହୁଥିବା କୃମି ଷାଠିଏ ଫୁଟ ପର୍ଯ୍ୟନ୍ତ ଓ ଗୋ କୃମି ଶହେ ଫୁଟ ପର୍ଯ୍ୟନ୍ତ ଲମ୍ବା ହେବାର ଦେଖାଯାଇଛି ।

ସେଲଫିସ ବା ଶାମୁକା ଜାତିର ବହୁ ଜୀବ ଅଛନ୍ତି । ସେମାନଙ୍କ ମଧ୍ୟରୁ ଗେଣ୍ଡା ଆଦି କେତେକ ମଧୁର ପାଣିରେ ଓ ଅଧିକାଂଶ ସମୁଦ୍ରରେ ବାସ କରନ୍ତି । ଏହି ଶ୍ରେଣୀର ଜୀବର ମାଂସଳ ଦେହ ଉପରେ ସାଧାରଣତଃ କଠିଣ ଆବରଣଟି ଗୋଟିକିଆ ବା ଦୁଇ ଫାଳିଆ ହୋଇଥାଏ । ଗେଣ୍ଡା, ଶଙ୍ଖ ଏବଂ କ୍ଲାମ୍, ମସଲ୍ ଆଦି ଶାମୁକା ଏହି ଜାତିର । ଅକ୍ଟୋପସ୍ ଓ ସ୍କ୍ୱିଡ଼ର ଏହି କଠିଣ ଆବରଣଟି ଲୁପ୍ତପ୍ରାୟ ବା ମୋଟେ ନଥିଲେ ବି ସେମାନଙ୍କୁ ଶାମୁକା ଜାତିରେ ଗ୍ରହଣ କରାଯାଏ । ସ୍କ୍ୱିଡ଼ର ଦଶଟି ବାହୁ, ସେଥିରୁ ଦୁଇଟି ଅନ୍ୟ ବାହୁମାନଙ୍କଠାରୁ ଯଥେଷ୍ଟ ଲମ୍ବା । ନିଉଫାଉଣ୍ଡଲାଣ୍ଡ ଉପକୂଳରେ ଏକ ପ୍ରକାର ରାକ୍ଷସ ସ୍କ୍ୱିଡ଼ ଦେଖାଯାନ୍ତି । ସେଠାରୁ ଧରା ଯାଇଥିବା ଗୋଟିଏ ସ୍କ୍ୱିଡ଼ର ମୋଟ ଦୈର୍ଘ୍ୟ ଥିଲା ପଞ୍ଚାବନ ଫୁଟ । ଏ ଭଳି ଏକ ଦାନବ ସ୍କ୍ୱିଡ଼ର ଓଜନ ଏକ ଟନରୁ ବେଶୀ ହେବ । ବେଳେ ବେଳେ ଦୁଇଫୁଟ ବ୍ୟାସ ବିଶିଷ୍ଟ ସ୍କ୍ୱିଡ଼ର ବାହୁ ଖଣ୍ଡମାନ ସମୁଦ୍ରରେ ଭାସୁଥିବାର ଦେଖାଯାଇଛି । ଏହି ବାହୁ ଖଣ୍ଡମାନ ଯେଉଁ ଦାନବ ସ୍କ୍ୱିଡ଼ର ଜୀବିତାବସ୍ଥାରେ ତାହା ଦେଢ଼ ଶହେ ଫୁଟ ଲମ୍ବ ହୋଇଥିବ । ପୂର୍ବ ବର୍ଣ୍ଣିତ ଫିତା କୃମି ଓ ପ୍ରୋବୋସିସ୍ ପରି କୀଟ ତଥା କେତେକ ଜାତିର ଜେଲିଫିସ୍‌ଙ୍କ ଦୈର୍ଘ୍ୟ ଅଧିକ ହେଲେ ମଧ୍ୟ ଅସ୍ଥି ବିହୀନ ଜୀବମାନଙ୍କ ମଧ୍ୟରେ ଦାନବ ସ୍କ୍ୱିଡ଼ହିଁ ସବୁଠାରୁ ପ୍ରକାଣ୍ଡକାୟ । କେତେକ ଅକ୍ଟୋପସ୍ ମଧ୍ୟ ଖୁବ୍ ବୃହଦାକାର । ଅକ୍ଟୋପସ୍ ସ୍କ୍ୱିଡ଼ର ଜ୍ଞାତି ଭାଇ । ଅଷ୍ଟ୍ରେଲିଆ ଉପକୂଳରେ ଦେଖାଯାଉଥିବା ଏକ ଜାତିର ଅକ୍ଟୋପସ୍‌ର ବ୍ୟାସ ତିରିଶ ଫୁଟ ପର୍ଯ୍ୟନ୍ତ ହେବାର ଦେଖାଯାଇଛି । ଏଠାରେ ଥରେ ଅଠେଇଶ ଫୁଟ ଲମ୍ବ ବାହୁ-ବିଶିଷ୍ଟ ଗୋଟିଏ ଅକ୍ଟୋପସ୍ ଧରା ହୋଇଥିଲା ।



ଅକ୍ଟୋପସ୍

ଚିତ୍ର - ୯

ପ୍ରଶାନ୍ତ ମହାସାଗରରେ ମହାକାୟ କ୍ଲାମ୍ ଶାମୁକା ଦେଖାଯାଆନ୍ତି । ଆମେରିକାର ପ୍ରାକୃତିକ ଇତିହାସ ମ୍ୟୁଜିୟମ୍‌ରେ ଦୁଇଟି ବୃହଦାକାର କ୍ଲାମ୍ ଖୋଳ ରହିଛି । ସେ ଦୁଇଟିର ଓଜନ ମିଶି ପାଞ୍ଚଶହ ଅଶୀ ପାଉଣ୍ଡ ।

ଉଷ୍ଣ ଅଞ୍ଚଳରେ ଫୁଟେ ଲମ୍ବର ଜେଙ୍ଗୁଲିଆ ବିଛା ଦେଖାଯାନ୍ତି । ପତଙ୍ଗମାନଙ୍କ ମଧ୍ୟରେ ବୋର୍ଣ୍ଣିଓରେ ଦେଖାଯାଉଥିବା ଏକ ଜାତିର ଅନୁ ଡାହାଣୀ ସବୁଠାରୁ ବଡ଼ । ଏହା ପ୍ରାୟ ତେର ଇଞ୍ଚ ପର୍ଯ୍ୟନ୍ତ ଲମ୍ବା ହୋଇଥାଏ । ଏମାନଙ୍କୁ 'ଚଳନ୍ତକାଠି' ବୋଲି କୁହାଯାଏ । ଅଷ୍ଟ୍ରେଲିଆରେ 'ହରକ୍ୟୁଲସ୍' ଓ 'ଆଟ୍‌ଲାସ୍' ଉପଜାତିର ମଥ୍ ପ୍ରଜାପତି ଦେଖାଯାନ୍ତି । ଡେଣା ବିସ୍ତାରିତ ଅବସ୍ଥାରେ ଏହାର ଦୈର୍ଘ୍ୟ ବାର ଇଞ୍ଚରୁ ଚଉଦ ଇଞ୍ଚ ପର୍ଯ୍ୟନ୍ତ ହୋଇଥାଏ ।


ଜେଙ୍ଗୁଲିଆ ବିଛା

ଚିତ୍ର-୩

ବଡ଼ ବଡ଼ ମାଛ ଧରିବାକୁ ସବୁ ମାଛଧରାଳୀଙ୍କ ଆଗ୍ରହ । କିନ୍ତୁ ବୃହତ୍ତମ ମାଛକୁ ବନଶୀ କଣ୍ଟାରେ ଧରି ହେବ ନାହିଁ । ଏ ମାଛଟି ହେଲା ସାର୍କ ପରିବାରର ହ୍ୱେଲ-ସାର୍କ (whale shark) । ଏଭଳି ନାମକରଣର କାରଣ ହେଲା ଏହାର ବିଶାଳ କଳେବର । ଥରେ ପଞ୍ଚଚାଳିଶ ଫୁଟ ଲମ୍ବ ଗୋଟିଏ ହ୍ୱେଲ-ସାର୍କ ଧରା ହୋଇଥିଲା, ଯାହା ଗୋଟିକର ଓଜନ ହୋଇଥିଲା ଛବିଶ ହଜାର ପାଉଣ୍ଡ । ଏ ଜାତିର ମାଛ ଖୁବ୍ ବିରଳ ତେଣୁ ଖୁବ୍ କମ ଧରା-ପଡନ୍ତି । ତେବେ ବୈଜ୍ଞାନିକମାନଙ୍କ ଅନୁମାନ ଯେ ହ୍ୱେଲ-ସାର୍କ ପ୍ରାୟ ଷାଠିଏ ଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇପାରେ । ଏହି ଜାତିର ସାର୍କକୁ ଧରିବାରେ ମାଛ ଧରାଳୀମାନଙ୍କ ଆଗ୍ରହ ଅଭାବର ଏକ କାରଣ ହେଲା ଯେ ଏତେ ବିଶାଳକାୟ ହୋଇଥିଲେ ମଧ୍ୟ ହ୍ୱେଲ-ସାର୍କ ଅତି ଛୋଟ ଛୋଟ ମାଛ, ସ୍କୁଇଡ୍ ଓ ଅନ୍ୟାନ୍ୟ ସାମୁଦ୍ରିକ ଜୀବ ଖାଏ । ତେଣୁ ମାଛ ଧରାଳୀମାନେ ସାଧାରଣତଃ ଟୋପ କରି ଗୁନ୍ଥୁଥିବା ବଡ ବଡ଼ ମାଂସ ଖଣ୍ଡ ସେମାନଙ୍କୁ ଆକୃଷ୍ଟ କରେନାହିଁ । ହ୍ୱେଲ-ସାର୍କର ଦାନ୍ତ ମାତ୍ର ଅଧ ଇଞ୍ଚେ ଲମ୍ବା ଓ କଣ୍ଠ ଖୁବ୍ ଛୋଟ । ହ୍ୱେଲ-ସାର୍କ ଚେଷ୍ଟା କଲେ ବି ମଣିଷଟିଏ ଗିଳି ପାରିବ ନାହିଁ ।

ଅନ୍ୟ ଏକ ବୃହଦାକାର ମାଛ ହେଲା ଖରସୁଆ ସାର୍କ (Basking Shark) । ଏହାର ଲମ୍ବ ଚାଳିଶ ଫୁଟ ପର୍ଯ୍ୟନ୍ତ ଓ ଓଜନ ପ୍ରାୟ ଦଶହଜାର ପାଉଣ୍ଡ ପର୍ଯ୍ୟନ୍ତ ହୋଇଥାଏ । କରତ ମାଛ (Saw Fish) ମଧ୍ୟ ବୃହଦାକାର । ଏହା ପାଟିରେ ଦାନ୍ତଯୁକ୍ତ କରତ ମୁନ ପରି ସଜାଡ଼ି ହୋଇ ରହିଥାଏ । ଏମାନଙ୍କ ଲମ୍ବ ପଚିଶ ଫୁଟରୁ ଚାଳିଶ ଫୁଟ ପର୍ଯ୍ୟନ୍ତ ଏବଂ ଓଜନ ହାରାହାରି ସାଢେ ଚଉଦହଜାର ପାଉଣ୍ଡ ପର୍ଯ୍ୟନ୍ତ ହୋଇଥାଏ ।

ଅନେକ ଲୋକଙ୍କର ଧାରଣା ଯେ କେତେକ ଜାତିର ସାପ ପଚାଶ/ଷାଠିଏ ଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇଥାନ୍ତି । ଜୀବତତ୍ତ୍ୱବିତ୍‌ମାନେ କହନ୍ତି ଯେ ସ୍ଥଳରେ ସାପମାନଙ୍କ ମଧ୍ୟରେ ଏକ ଜାତିର ବୋଡ଼ା ହିଁ ସବୁଠାରୁ ଲମ୍ବା । ଏହି ଜାତିର ବୋଡ଼ା ସାପ ସାଧାରଣତଃ ଏସିଆ ଓ ଉଷ୍ଣକଟିବନ୍ଧୀ ଅଞ୍ଚଳରେ ଦେଖାଯାନ୍ତି । ଏମାନଙ୍କ ଦୈର୍ଘ୍ୟ ପଞ୍ଚତିରିଶ ଫୁଟ ପର୍ଯ୍ୟନ୍ତ ହେବାର ଦେଖାଯାଇଛି । ପାଣିରେ ରହୁଥିବା ସାପମାନଙ୍କ ମଧ୍ୟରେ ସର୍ବୋତ୍ତମ


ଆନାକୋଣ୍ଡା

ଚିତ୍ର-୪

ହେଉଛି ଦକ୍ଷିଣ ଆମେରିକାର ଆନାକୋଣ୍ଡା । ୧୯୨୪ ମସିହାରେ ବ୍ରାଜିଲ୍‌ରେ ଚଉରିଶ ଫୁଟ ଲମ୍ବ ଗୋଟିଏ ଆନାକୋଣ୍ଡା ଧରା ହୋଇଥିଲା ।



ଚିତ୍ର-୫ କଣ୍ଡର

ପକ୍ଷୀମାନଙ୍କ ମଧ୍ୟରେ ଓଟପକ୍ଷୀ ବୃହତ୍ତମ । ଗୋଟିଏ ପ୍ରାପ୍ତବୟସ୍କ ଅଷ୍ଟ୍ରିଚ ଓଟପକ୍ଷୀ ପ୍ରାୟ ଆଠଫୁଟ ଉଚ୍ଚ ଓ ପ୍ରାୟ ତିନିଶହ ପାଉଣ୍ଡ ପର୍ଯ୍ୟନ୍ତ ଓଜନ ହୋଇଥାଏ । ପକ୍ଷୀମାନଙ୍କ ମଧ୍ୟରେ କାହାର ଡେଣା-ବିସ୍ତାର ବେଶି ସେ ସଂପର୍କରେ ମତ ପାର୍ଥକ୍ୟ ରହିଛି । ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ହେଲେ ଦକ୍ଷିଣ ଆମେରିକାରେ ବାସ କରୁଥିବା କଣ୍ଡର ଓ ସାମୁଦ୍ରିକ ପକ୍ଷୀ ଆଲ୍‌ବାଟ୍ରସ୍ । ଏମାନଙ୍କ ବିସ୍ତାରିତ ଡେଣାର ଦୈର୍ଘ୍ୟ ଅନେକ ସମୟରେ ଖୁବ୍ ବଢ଼ାଇ କରି କୁହାଯାଇଛି । ଏକ ପ୍ରସିଦ୍ଧ ବିଶ୍ୱକୋଷରେ ଉଲ୍ଲେଖ ଅଛି ଯେ ଆଲ୍‌ବାଟ୍ରସର ବିସ୍ତାରିତ ଡେଣାର ଦୈର୍ଘ୍ୟ ସତର, ଅଠର ଫୁଟ । ବିଭିନ୍ନ ସମୟରେ ବହୁ ଭିନ୍ନ ଭିନ୍ନ ଲୋକ ହଜାର ହଜାର ଆଲ୍‌ବାଟ୍ରସ୍‌ଙ୍କ ବିସ୍ତାରିତ ଡେଣା ମାପିଛନ୍ତି । ଏ ପର୍ଯ୍ୟନ୍ତ ମିଳିଥିବା ହିସାବରୁ ଜଣାଯାଏ ଯେ ଆଲ୍‌ବାଟ୍ରସର ବିସ୍ତାରିତ ଡେଣାର ସର୍ବୋଚ୍ଚ ଦୈର୍ଘ୍ୟ ଏଗାର ଫୁଟ ଚାରି ଇଞ୍ଚ । ସେହିପରି ଯେତେ କଣ୍ଡୋର



ଚିତ୍ର-୬ ଆଲ୍‌ବାଟ୍ରସ୍

ମପା ଯାଇଛନ୍ତି, ଦଶ ଫୁଟ ବିସ୍ତାରିତ ଡେଣା ବିଶିଷ୍ଟ ଗୋଟିଏ କଣ୍ଡୋର ସେମାନଙ୍କ ମଧ୍ୟରେ ବୃହତ୍ତମ ।

ନୀଳ ତିମି ସ୍ତନ୍ୟପାୟୀମାନଙ୍କ ମଧ୍ୟରେ ବୃହତ୍ତମ । ଆଜି ପର୍ଯ୍ୟନ୍ତ ପୃଥିବୀ ପୃଷ୍ଠରେ ଯେତେ ଜୀବ ଦେଖାଯାଇଛନ୍ତି ନୀଳ ତିମି ସମସ୍ତଙ୍କଠାରୁ ବଡ଼ । ଅଣାନବେ ଫୁଟ ଲମ୍ବର ଗୋଟିଏ ନୀଳ ତିମିକୁ ଜାହାଜ ଉପରେ ଖଣ୍ଡ ଖଣ୍ଡ କରି କାଟି ଓଜନ କରାଯାଇଥିଲା, ଓଜନ ଉଠିଲା ତିନି ଲକ୍ଷ ସାତ ଶହ ସାତ ପାଉଣ୍ଡ । ନୀଳ ତିମି ଶହେ ଫୁଟରୁ ବେଶି ଲମ୍ବା ହେବାର ବହୁ ସମ୍ବାଦ ଲିପିବଦ୍ଧ ହୋଇଛି ।

ହାତୀ ସ୍ଥଳ ଜୀବମାନଙ୍କ ମଧ୍ୟରେ ବୃହତ୍ତମ । ଦୁଇ ଜାତିର ହାତୀ ଦେଖାଯାନ୍ତି—ଆଫ୍ରିକୀୟ ଓ ଏସିୟ । ଆଫ୍ରିକୀୟ ହାତୀ ଏସିୟ ହାତୀଠାରୁ ଯଥେଷ୍ଟ ବଡ଼ ହୋଇଥାନ୍ତି । କାନ୍ଧ ପାଖରେ ଏଗାର ବାର ଫୁଟ ଉଚ୍ଚ ହାତୀ ଆଫ୍ରିକାରେ ଅନେକ ଅଛନ୍ତି । ବଣୁଆ ହାତୀମାନଙ୍କ ଓଜନ ନେବା ଦୁରୂହ । କିନ୍ତୁ ଚିଡ଼ିଆଖାନାରେ ପୋଷା ହୋଇଥିବା ହାତୀଙ୍କ ଓଜନ ନିଆଯାଇ ଦେଖାଯାଇଛି ଯେ ଦଶଫୁଟ ଉଚ୍ଚ ଗୋଟିଏ ଆଫ୍ରିକୀୟ ହାତୀ ହାରାହାରି ଦଶହଜାର ପାଉଣ୍ଡ ଓଜନ ହୋଇଥାଏ ।

ବଡ଼ ବଡ଼ ଶିଂଘ ବା ଦାନ୍ତ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ଭାରତୀୟ ମହିଷର ଶିଂଘ ସବୁଠାରୁ ବଡ଼ । ବ୍ରିଟିଶ ମ୍ୟୁଜିୟମ୍‌ରେ ଥିବା ଏଭଳି ଏକ ଶିଂଘ ସାଢେ ଛ'ଫୁଟ ଲମ୍ବ । ଏସିଆରେ ଦେଖା ଯାଉଥିବା ଓଭିସ୍‌ପଲି ଜାତିର ମେଣ୍ଢାଙ୍କ ଶିଂଘ ମଧ୍ୟ ଖୁବ୍ ବଡ଼ ।

ମୁଜ୍ ଜାତୀୟ ହରିଣର ଶିଂଘ ଭାରତୀୟ ମହିଷ ଶିଂଘଠାରୁ ଯଥେଷ୍ଟ ଛୋଟ, ହେଲେ ଖୁବ୍ ଓଜନଦାର । ହଳେ ମୁଜ୍ ଶିଂଘର ଓଜନ ପ୍ରାୟ ପଞ୍ଚାଅଶି ପାଉଣ୍ଡ ପର୍ଯ୍ୟନ୍ତ ହୋଇପାରେ । ଯେତେ ଜୀବଜନ୍ତୁ ଅଛନ୍ତି, ଆଫ୍ରିକୀୟ ହାତୀର ଦାନ୍ତ ସମସ୍ତଙ୍କ ଦାନ୍ତଠାରୁ ବଡ଼ । ବ୍ରିଟିଶ ମ୍ୟୁଜିୟମ୍‌ରେ ହଳେ ବିଶାଳ ହାତୀଦାନ୍ତ ରହିଛି, ପ୍ରତ୍ୟେକଟି ଦଶଫୁଟରୁ ଅଧିକ ଲମ୍ବା ଏବଂ ଦାନ୍ତ ହଳକର ଓଜନ ତିନିଶହ ଷାଠିଏ ପାଉଣ୍ଡ । ହାତୀର ପୂର୍ବ ପୁରୁଷ ମାମଥ୍ ଏବେ ଲୋପପାଇ ଗଲେଣି । ତେବେ ତାହାର ଦାନ୍ତ ଆଫ୍ରିକୀୟ ହାତୀର ଦାନ୍ତଠାରୁ ମଧ୍ୟ ବଡ଼ । ଆମେରିକାସ୍ଥ ପ୍ରାକୃତିକ ଇତିହାସ ମ୍ୟୁଜିୟମ୍‌ରେ ଗୋଟିଏ ମାମଥ୍ ଦାନ୍ତ ସଂରକ୍ଷିତ ହୋଇଛି, ତାହାର ଲମ୍ବା ଷୋହଳ ଫୁଟରୁ ବେଶି । ମାମଥ୍‌ର କଙ୍କାଳ ବହୁସ୍ଥାନରୁ ମିଳିଛି । ସେଗୁଡ଼ିକ ମାପଚୁପ କରି ଦେଖାଯାଇଛି ଯେ ମାମଥ୍ ପ୍ରାୟ ପନ୍ଦର ଷୋହଳ ଫୁଟ ଉଚ୍ଚ ହେଉଥିଲା ।



ଚିତ୍ର-୭ ମୁଜ୍

ଘର ନଂ. ଡି-୨୧
ହସପିଟାଲହତା
ୟୁନିଟ୍-୬
ଭୁବନେଶ୍ୱର

## ପାଉଁରୁଟିର ପ୍ରଚଳିତ ଦର କମାଇ ଦିଆଗଲା

ମଇଦାର ମିଲ୍ ଦର କୁଇଣ୍ଟାଲ ପ୍ରତି ଟ ୨୦୨.୦୦ ରୁ ଟ ୧୮୭.୫୪ ପଇସାକୁ କମାଇ ଦିଆଯାଇଥିବା ହେତୁ ରାଜ୍ୟରେ ଥିବା ପାଉଁରୁଟି କାରଖାନାମାନେ ପ୍ରସ୍ତୁତ କରୁଥିବା ରୁଟିର ଦର ଖାଉଟିମାନଙ୍କୁ କମ୍ ଦରରେ ଯୋଗାଇ ଦେବାପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ସଂଶୋଧିତ ହ୍ରାସ ଦର ଓ ବର୍ତ୍ତମାନ ପ୍ରଚଳିତ ଦର ସର୍ବସାଧାରଣଙ୍କ ଅବଗତି ନିମନ୍ତେ ନିମ୍ନରେ ପ୍ରଦତ୍ତ ହେଲା:—

| ରୁଟିର ଓଜନ | ପ୍ରଚଳିତ ଦର | ସଂଶୋଧିତ ଦର |
|---|---|---|
| ୪୦୦ ଗ୍ରାମ୍ ରୁଟି .. | ଟ ୧.୨୦ ପଇସା | ଟ ୧.୧୫ ପଇସା |
| ୨୦୦ ଗ୍ରାମ୍ ରୁଟି .. | ଟ ୦.୬୦ ପଇସା | ଟ ୦.୫୮ ପଇସା |
| ୧୦୦ ଗ୍ରାମ୍ ରୁଟି .. | ଟ ୦.୩୫ ପଇସା | ଟ ୦.୩୩ ପଇସା |

ମଇଦା ପରିବହନ ଖର୍ଚ୍ଚ ଅଧିକ ପଡ଼ୁଥିବା ହେତୁ କୋରାପୁଟ ଜିଲ୍ଲାରେ ପ୍ରତ୍ୟେକ ପ୍ରକାର ରୁଟି ଉପରେ ଅଧିକ ଟ ୦.୦୫ ପଇସା ଲାଗିବ । ଉପରୋକ୍ତ ନିମ୍ନରେ ଦର୍ଶାଯାଇଥିବା ରୁଟିର ଦର ସମଗ୍ର ରାଜ୍ୟରେ ତା ୧।୮।୧୯୭୭ ରିଖ ଠାରୁ ଲାଗୁ ହୋଇଛି ।

୪୦୦ ଗ୍ରାମ, ୨୦୦ ଗ୍ରାମ୍ ଓ ୧୦୦ ଗ୍ରାମ୍ ରୁଟି ପ୍ୟାକିଂ କରିବା ପାଇଁ ବ୍ୟବହୃତ ହେଉଥିବା କାଗଜରେ ପ୍ରଚଳିତ ଦର ଯଥାକ୍ରମେ ଟ ୧.୨୦ ପଇସା, ଟ ୦.୬୦ ପଇସା ଓ ଟ ୦.୩୫ ପଇସା ଲେଖାଯାଇ ଛାପିତ ଥିଲେ ପାଉଁରୁଟି କାରଖାନାମାନେ ସେଗୁଡ଼ିକ ବ୍ୟବହାର କରି ପାରନ୍ତି । ମାତ୍ର ଖାଉଟିମାନେ ୧୯୭୭ ଅଗଷ୍ଟ ପହିଲାଠାରୁ ଉପରଲିଖିତ ସଂଶୋଧିତ ଦରରେ ରୁଟି କିଣିବାପାଇଁ ଏତଦ୍ଵାରା ସେମାନଙ୍କୁ ଜଣାଇ ଦିଆଯାଉଛି ।






# ହସ୍ତତନ୍ତ ଶିଳ୍ପ ବିକାଶରେ ଆମ ରାଜ୍ୟ

**ଶ୍ରୀ କାହ୍ନୁ ଚରଣ ଲେଙ୍କା**
ରାଷ୍ଟ୍ର ମନ୍ତ୍ରୀ ଶିଳ୍ପ, ଯୋଜନା ଓ ସମନ୍ୱୟ, ଓଡ଼ିଶା

ଶତାବ୍ଦୀମାନଙ୍କ ପଛକୁ ଚାହିଁଲେ ଦେଖାଯାଏ ଦିନଥିଲା ଓଡ଼ିଶା ଶିଳ୍ପ ଓ ବାଣିଜ୍ୟ ପ୍ରଭୃତି କ୍ଷେତ୍ରରେ ଶୀର୍ଷ ସ୍ଥାନକୁ ପହଞ୍ଚି ପାରିଥିଲା । ମାତ୍ର ସମୟର ଗତିରେ ସେଥିରେ ଅବନତି ଘଟିଲା ଓ ଶେଷକୁ ଏହା ଏକ ଦରିଦ୍ର ରାଜ୍ୟର ଆଖ୍ୟା ଗ୍ରହଣକଲା । ପ୍ରାକୃତିକ ସମ୍ପଦଭରା ଏହି ରାଜ୍ୟର ଅଧିବାସୀଙ୍କ ମଧ୍ୟରୁ ଶତକଡ଼ା ୭୦ଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହୁଥିବା କଥା ଭାବିଲେ ଉଭୟ ଦୁଃଖ ଓ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହେବାକୁ ପଡ଼େ ।

ଆଜି କିନ୍ତୁ ପରିସ୍ଥିତିର ଗତି ବଦଳିଛି । ରାଜ୍ୟବାସୀ ତଥା ଦେଶବାସୀଙ୍କ ମନରେ ଆଲୋଡ଼ନ ସୃଷ୍ଟି କରିଛି ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଘୋଷିତ କୋଡ଼ିଏ ଦଫା ଅର୍ଥନୈତିକ ବିପ୍ଳବର କାର୍ଯ୍ୟକ୍ରମ । ଦେଶବାସୀ ଏହାର ସୁଫଳ ଭୋଗ କଲେଣି । ଗାଁ ମୁଣ୍ଡରେ ବାସହୀନ ଅବସ୍ଥାରେ ରହୁଥିବା ନିରାଶ୍ରୟ ବ୍ୟକ୍ତି ମଧ୍ୟ ଆଜି ନୂତନ ଆଲୋକ ଓ ନୂତନ ଜୀବନର ସନ୍ଧାନ ପାଇଛି ।

ସମାଜର ଦୁର୍ବଳ ଶ୍ରେଣୀ ଲୋକଙ୍କପାଇଁ ବର୍ତ୍ତମାନ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଅର୍ଥନୈତିକ ଯୋଜନାମଧ୍ୟରେ ହସ୍ତ ତନ୍ତ୍ର ଶିଳ୍ପର ବିକାଶ ଅନ୍ୟତମ । ଏହି ଶିଳ୍ପ ଆମର ଅତି ପୁରୁଣା ହେଲେ ମଧ୍ୟ ବିଦେଶୀ ଶାସନ କାଳରେ ଏହା କେବଳ ଶିଳ୍ପକୁ ଯେଣ ମୁମୂର୍ଷୁ ଅବସ୍ଥାରେ ପଡ଼ି ରହିଲା । ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ଏହି ଶିଳ୍ପର ବିକାଶ ଦିଗରେ ମନ୍ଥରତା ଯୋଗୁଁ ରାଜ୍ୟର ଆର୍ଥିକ ଉନ୍ନତି ଦିଗରେ ଏହା ବିଶେଷ ସହାୟକ ହୋଇ ନାହିଁ ତେଣୁ କୋଡ଼ିଏ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମରେ ହସ୍ତତନ୍ତ୍ର ଶିଳ୍ପକୁ ଗୁରୁତ୍ୱପୂର୍ଣ୍ଣବୋଲି ଗ୍ରହଣ କରାଯାଇଛି ।

ଆମ ରାଜ୍ୟରେ ବର୍ତ୍ତମାନ ୧ଲକ୍ଷ ୪ହଜାର ହାତତନ୍ତ ରହିଛି ଏବଂ ଏଥିରେ ପ୍ରାୟ ୩ଲକ୍ଷ ଲୋକ ନିଯୁକ୍ତ ରହିଛନ୍ତି । ଏହି ତନ୍ତଗୁଡ଼ିକରେ ବାର୍ଷିକ ୭କୋଟିରୁ ୮କୋଟି ଟଙ୍କା ମୂଲ୍ୟର ବିଭିନ୍ନ ଧରଣର ଲୁଗା ଉତ୍ପାଦନ ହୁଏ । ଏହି ଲୁଗା ମଧ୍ୟରେ ବିଭିନ୍ନ ରଙ୍ଗର ଟାଇପଡ଼ା ଶାଢ଼ୀ ଓ ପର୍ଦ୍ଦା ଇତ୍ୟାଦିର ଆଦର ଦେଶରେ ଓ ଦେଶ ବାହାରେ ଦିନକୁ ଦିନ ବଢ଼ିବାରେ ଲାଗିଛି । ଏ ଧରଣର ଲୁଗା; ବିଶେଷକରି ସମ୍ବଲପୁର, ବଲାଙ୍ଗୀର ଓ କଟକ ଜିଲ୍ଲା ନୂଆପାଟଣାର ବୁଣାଳୀମାନେ ତିଆରି କରନ୍ତି । ଏହାର ଶୈଳୀ ଓ ପରିପାଟୀରେ ଅଧିକ ନୂତନତ୍ୱ ସଂଯୋଗକରି ବିଦେଶୀ ମୁଦ୍ରା ଅର୍ଜନପାଇଁ ବ୍ୟବସ୍ଥା କରାଯାଇଛି ।

ସମବାୟ ସମିତି ଜରିଆରେ ଏହି ଶିଳ୍ପର ବିକାଶପାଇଁ ଅର୍ଥ ବରାଦ କରିବା ସହଜ ହେଉଥିବା ଦୃଷ୍ଟିରୁ ରାଜ୍ୟରେ ଅଧିକରୁ ଅଧିକ ତନ୍ତବାୟ ସହଯୋଗ ସମିତି ଗଠନ କରାଯିବା ଉପରେ ଜୋର ଦିଆଯାଉଛି । ସମିତି ଅଧୀନରେ ଥିବା ବୁଣାକାରମାନଙ୍କୁ ଆର୍ଥିକ ସାହାଯ୍ୟଠାରୁ ଆରମ୍ଭକରି ଆଧୁନିକ ଧରଣର ଯନ୍ତ୍ରପାତି କିଣିବା ଓ ଗୋଦାମ ଘର ତିଆରି କରିବାପାଇଁ କେତେକ ରିହାତି ସହ ଋଣ ଯୋଗାଇ ଦିଆଯାଏ । ସମିତି ବାହାରେ ରହିଥିବା ବୁଣାକାରମାନଙ୍କୁ ସମିତି ଅଧୀନକୁ ଆଣିବାପାଇଁ ପ୍ରବର୍ତ୍ତାଇବା ସଙ୍ଗେ ସଙ୍ଗେ ସେମାନଙ୍କ ବ୍ୟବସାୟର ଅଭିବୃଦ୍ଧିପାଇଁ ମଧ୍ୟ ଅର୍ଥର ବରାଦ କରାଯାଏ ।

ଉତ୍ପନ୍ନ ବସ୍ତ୍ରର ବିକ୍ରୟପାଇଁ ସମିତି କିମ୍ବା ବ୍ୟକ୍ତିଗତ ବୁଣାକାରମାନେ ସମ୍ମୁଖୀନ ହେଉଥିବା ଅସୁବିଧା ଦୂର କରିବାକୁ ରାଜ୍ୟସ୍ତରୀୟ ଏକ ସମିତି ଗଠନ କରାଯାଇଛି । ଏହି ସମିତିର କାର୍ଯ୍ୟାଳୟ ଭୁବନେଶ୍ୱରଠାରେ ରହିଛି ଓ ଏହା ଅଧୀନରେ ରାଜ୍ୟର ୧୬ଟି ମୁଖ୍ୟ ସ୍ଥାନରେ ବିକ୍ରୟ କେନ୍ଦ୍ର ଖୋଲାଯାଇଅଛି ।

ପ୍ରାଥମିକ ସମିତିମାନଙ୍କରେ ଗଚ୍ଛିତ ହେବା ଲୁଗା ବିକ୍ରୟ କରାଯାଇ ହାତବୁଣା ଲୁଗାର ବହୁଳ ପ୍ରସାର ଉଦ୍ଦେଶ୍ୟରେ ଲୁଗା ମୂଲ୍ୟର ଶତକଡ଼ା ୨୦ ଭାଗ ସ୍ୱତନ୍ତ୍ର ରିହାତି ଗତ ଡିସେମ୍ବର ମାସରୁ ଚଳିତ ବର୍ଷ ଫେବୃଆରି ମାସ ଶେଷ ପର୍ଯ୍ୟନ୍ତ ଦିଆଯାଇଥିଲା । ଏହି ସମୟ ମଧ୍ୟରେ ପ୍ରାୟ ଦେଢ଼ କୋଟି ଟଙ୍କା ମୂଲ୍ୟର ହାତବୁଣା ଲୁଗା ବିକ୍ରୟ ହୋଇଥିଲା । ତାହା ପୂର୍ବବର୍ତ୍ତୀ ଅନ୍ୟାନ୍ୟ ବର୍ଷମାନଙ୍କର ବିକ୍ରି ଓ ଉତ୍ପାଦନଠାରୁ ଯଥେଷ୍ଟ ବେଶୀ ।

କେନ୍ଦ୍ର ସରକାର ଦେଶରେ ହସ୍ତତନ୍ତ ଶିଳ୍ପର ସମସ୍ୟାଗୁଡ଼ିକ ଅନୁଧ୍ୟାନ କରି ସମାଧାନ ପନ୍ଥା ନିର୍ଦ୍ଧାରଣ କରିବାକୁ ଏକ କମିଟି ଗଠନ କରିଥିଲେ । ପ୍ରତି ରାଜ୍ୟରେ ୫ ହଜାରରୁ ୧୦ହଜାର ତନ୍ତ ବିଶିଷ୍ଟ ଏକ ଇଉନିଟ୍ ଗଠନପାଇଁ ଏହି କମିଟିର ସୁପାରିଶକୁ କେନ୍ଦ୍ର ସରକାର ଅନୁମୋଦନ କରିଛନ୍ତି । ପ୍ରତି ଇଉନିଟ୍‌ପାଇଁ ଏକ କୋଟି ପଞ୍ଚାଅଶୀ ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଏ ବାବଦରେ ପ୍ରଥମ ତିନି ବର୍ଷର ଖର୍ଚ୍ଚ ମଧ୍ୟରୁ ଶତକଡ଼ା ୭୫ଭାଗ ଓ ପରବର୍ତ୍ତୀ ଦୁଇ ବର୍ଷର ଖର୍ଚ୍ଚ ମଧ୍ୟରୁ ଶତକଡ଼ା ୫୦ଭାଗ କେନ୍ଦ୍ର ସରକାର ଯୋଗାଇ ଦେବେ । ପ୍ରଥମ ତିନି ବର୍ଷରେ କେନ୍ଦ୍ରର ଏହି ୭୫ ଭାଗ ଅର୍ଥ ବରାଦ ମଧ୍ୟରୁ ୫୦ ଭାଗ ଋଣ ସ୍ୱରୂପ ଓ ୨୫ ଭାଗ ସାହାଯ୍ୟ ଆକାରରେ ମିଳିବ । ତଦନୁରୂପ ପରବର୍ତ୍ତୀ ଦୁଇ ବର୍ଷରେ କେନ୍ଦ୍ରରୁ ୫୦ ଭାଗ ଅର୍ଥ ବରାଦ ମଧ୍ୟରୁ ଏକ ଚତୁର୍ଥାଂଶ ଋଣ ଆକାରରେ ଓ ଅବଶିଷ୍ଟ ସାହାଯ୍ୟ ସ୍ୱରୂପ ମିଳିବ ।

ଆମ ରାଜ୍ୟରେ ଏହି ଭଳି ଏକ ଇଉନିଟ୍ ଗଠନ ପ୍ରସ୍ତାବକୁ କେନ୍ଦ୍ର ସରକାର ଅନୁମୋଦନ କରିଛନ୍ତି । ଏଥିପାଇଁ ୧ କୋଟି ୭୧ ଲକ୍ଷ ୩୮ ହଜାର ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଏହି ଇଉନିଟ୍ ଗଠନର ଉଦ୍ଦେଶ୍ୟ ହେଲା—ହସ୍ତତନ୍ତ ଶିଳ୍ପର ବିକାଶ ଦିଗରେ କେତେକ ଦୃଢ଼ ପଦକ୍ଷେପ ବ୍ୟତୀତ ବୁଣାକାରମାନଙ୍କୁ ଆବଶ୍ୟକୀୟ ସାମଗ୍ରୀ ଯୋଗାଇ ଦେବା, ସେମାନଙ୍କୁ ଆଧୁନିକ ବୈଷୟିକ ଜ୍ଞାନରେ ତାଲିମ ଦିଆଇବା ଓ ସମବାୟ ପରିସର ବାହାରେ ଥିବା ବୁଣାକାରମାନଙ୍କୁ ଉତ୍ପାଦନ ବୃଦ୍ଧି ଦିଗରେ ସାହାଯ୍ୟ କରିବା । ଏହାଦ୍ୱାରା ପ୍ରାୟ ୨୦ ହଜାର

ବୁଣାକାର ସବୁବେଳେ କାମରେ ଲଗି ରହିବେ । ଆଉ ଏକ ଯୋଜନା ହେଲା ଯେ ଆସନ୍ତା ୫ବର୍ଷ ମଧ୍ୟରେ ୧୦,୦୦୦ ହସ୍ତତନ୍ତକୁ ପୂର୍ଣ୍ଣ ବିଦେଶକୁ ରପ୍ତାନି କରିବାପାଇଁ ଲୁଗା ପଟା ତିଆରିରେ ଲଗାଇବା । ଉକ୍ତ ରପ୍ତାନିଯୋଗ୍ୟ ଲୁଗା ତିଆରିପାଇଁ ରାଜ୍ୟରେ ୮୯ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଏକ ଯୋଜନା କାର୍ଯ୍ୟକାରୀ କରିବାକୁ କେନ୍ଦ୍ର ସରକାର ସମ୍ମତ ଦେଇଛନ୍ତି । ଏହି ଖର୍ଚ୍ଚର ଶତକଡ଼ା ୭୫ ଭାଗ ଋଣ ଆକାରରେ ଏବଂ ଅବଶିଷ୍ଟ ୨୫ ଭାଗ ସାହାଯ୍ୟ ସ୍ୱରୂପ କେନ୍ଦ୍ର ସରକାର ଯୋଗାଇ ଦେବେ । ଏହା କାର୍ଯ୍ୟକାରୀ ହେଲେ ରାଜ୍ୟରେ ୧୦୦୦ ତନ୍ତରେ କେବଳ ରପ୍ତାନିଯୋଗ୍ୟ ଲୁଗା ପ୍ରସ୍ତୁତ କରାଯିବ । ଏହାଦ୍ୱାରା ପ୍ରାୟ ୨,୦୦୦ ବୁଣାକାର କାମରେ ଲଗି ରହିବେ ।

ହସ୍ତତନ୍ତ ବୁଣାକାରମାନଙ୍କୁ ସୁଲଭ ମୂଲ୍ୟରେ ଭଲ ସୂତା ଯୋଗାଇବାପାଇଁ ଆମ ରାଜ୍ୟରେ ବର୍ତ୍ତମାନ ୧୮,୪୦୦ ତାକୁଡ଼ି ବିଶିଷ୍ଟ ଏକ ସମବାୟ ସୂତାକଳ ସମ୍ବଲପୁର ଜିଲ୍ଲା ବରଗଡ଼ର ଭୋଗ୍ରାଠାରେ କାର୍ଯ୍ୟ କରୁଅଛି । ଆରମ୍ଭରୁ ଏହା ୧୨,୦୦୦ ତାକୁଡ଼ି ବିଶିଷ୍ଟ ସୂତାକଳ ଥିଲା । କିନ୍ତୁ ଇତିମଧ୍ୟରେ ଏହାକୁ ୧୮,୪୦୦ ତାକୁଡ଼ିକୁ ବୃଦ୍ଧି କରାଯାଇଛି । ଏହି ସୂତାକଳରୁ ବାର୍ଷିକ ପ୍ରାୟ ୧୮ ଲକ୍ଷ କିଲୋଗ୍ରାମର ସୂତା ଉତ୍ପାଦନ ହେଉଅଛି । ଏହି ଉତ୍ପାଦିତ ସୂତା ଆମ ରାଜ୍ୟପାଇଁ ଯଥେଷ୍ଟ ନୁହେଁ । ତେଣୁ ୨୫,୦୦୦ ତାକୁଡ଼ି ବିଶିଷ୍ଟ ଆଉ ଏକ ସମବାୟ ସୂତାକଳ ଢେଙ୍କାନାଳ ଜିଲ୍ଲାର ଗୋବିନ୍ଦପୁରଠାରେ ପ୍ରତିଷ୍ଠିତ ହେଉଅଛି । ଏଥିପାଇଁ ଆବଶ୍ୟକୀୟ ଜମିର ବ୍ୟବସ୍ଥା ହୋଇ ସାରିଅଛି । ମେସିନ୍‌ପାଇଁ ଅର୍ଡର ଦିଆ ଯାଇଅଛି । ରାଜ୍ୟ ସରକାର ଏହି ସୂତାକଳରେ ୩୭,୫୦,୦୦୦ ଟଙ୍କାର ଅଂଶଧନ ଖରିଦ କରିଅଛନ୍ତି । ଏହି ସୂତା କଳଟି ପ୍ରତିଷ୍ଠା କରିବାପାଇଁ ୫ କୋଟି ଟଙ୍କାର ଅଟକଳ କରାଯାଇଅଛି । ଏହି ଟଙ୍କା ଇଣ୍ଡଷ୍ଟ୍ରିଅଲ ଫାଇନାନ୍ସ କର୍ପୋରେସନ୍ ଓ ନ୍ୟାସନାଲ କୋ-ଅପରେଟିଭ୍ ଡେଭଲପମେଣ୍ଟ କର୍ପୋରେସନ୍ ଇତ୍ୟାଦିରୁ ଯୋଗାଡ଼ କରିବାର ବ୍ୟବସ୍ଥା କରାଯାଇଅଛି ।

ଏହି ସୂତା କଳ ପ୍ରତିଷ୍ଠା ହେଲେ ବାର୍ଷିକ ପ୍ରାୟ ୨୪ ଲକ୍ଷ କିଲୋଗ୍ରାମ ସୂତା ଉତ୍ପାଦନ କରିବ ଓ ୨,୦୦୦ ଲୋକଙ୍କୁ କର୍ମ ଯୋଗାଇ ପାରିବ । ଗଞ୍ଜାମ ଜିଲ୍ଲାରେ ମଧ୍ୟ ଆଉ ଗୋଟିଏ ଅନୁରୂପ ସୂତାକଳ ପ୍ରତିଷ୍ଠାନିମନ୍ତେ ପ୍ରସ୍ତାବ ରହିଛି ।





ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ଅଞ୍ଚଳରୁ ନଭେମ୍ବରେ ୧୯ ଜଣ ଗୋତିଙ୍କୁ ମୁକ୍ତ କରାଯାଇଛି ।
ଏହି ଗୋତି-ମୁକ୍ତ ଶ୍ରମିକଙ୍କ ଗହଣରେ ଗଞ୍ଜାମ ଜିଲ୍ଲାପାଳ ଓ ଅନ୍ୟାନ୍ୟ କର୍ମଚାରୀ ।

# ସଫଳତାର ଗୋଟିଏ ବର୍ଷ - ଏକ ସମୀକ୍ଷା

ଶ୍ରୀ ଲକ୍ଷ୍ମୀଧର ମିଶ୍ର

ଗତ ୧୯୭୫ ଜୁନ ୨୬ ତାରିଖରେ ସମ୍ବିଧାନର ୩୫୨ ଧାରା ବ୍ୟବସ୍ଥା ଅନୁଯାୟୀ ଆମ ଦେଶରେ ଏକ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇଥିଲା ଏବଂ ଏହା ପରେ ପରେ ଜୁଲାଇ ୧ ତାରିଖରେ ପ୍ରଧାନମନ୍ତ୍ରୀ ୨୦ ଦଫା ସମ୍ବଳିତ ଏକ ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ ଦେଶବାସୀଙ୍କ ସମକ୍ଷରେ ଉପସ୍ଥାପନ କରିଥିଲେ । ଏହାଥିଲା ଏକ କ୍ରାନ୍ତିକାରୀ ଐତିହାସିକ ପଦକ୍ଷେପ । ଏହା ଭିତରେ ଏକ ବର୍ଷ ବିତିଯାଇଛି । ସାରା ଦେଶରେ ବିପୁଳ ଉତ୍ସାହ ଉଦ୍ଦୀପନା ଭିତରେ 'ସଫଳତାର ସାମ୍ବତ୍ସରିକ ଉତ୍ସବ' ଉଦ୍‌ଯାପିତ ହୋଇଛି । ଯେଉଁ ପରିପ୍ରେକ୍ଷୀରେ ଦେଶରେ ଜରୁରୀକାଳୀନ ପରିସ୍ଥିତିର ଉଦ୍ଭବ ହୋଇଥିଲା ବା ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ ଉପସ୍ଥାପନ କରାଯାଇଥିଲା ତାହା ଏତତ୍ ପୂର୍ବରୁ ବହୁବାର ବହୁ କ୍ଷେତ୍ରରେ ଆଲୋଚିତ ହୋଇସାରିଛି । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏକ ସୁସ୍ଥ, ସମୃଦ୍ଧ, ସ୍ୱାବଲମ୍ବୀ ନୂତନ ଭାରତବର୍ଷ ମାଧ୍ୟମରେ ଶାନ୍ତିପୂର୍ଣ୍ଣ ଗଣତାନ୍ତ୍ରିକ ପଦ୍ଧତିରେ ବାସ୍ତବ ସମାଜବାଦ ପ୍ରତିଷ୍ଠା କରିବା ଓ ସେ ସମାଜବାଦର ସୁଫଳଗୁଡ଼ିକୁ ଲୋକମାନଙ୍କ ଆଗରେ ସହଜ ଏବଂ ସୁଗମ ପ୍ରଣାଳୀରେ ପହଞ୍ଚାଇ ଦେବା ହେଉଛି ଏହି କାର୍ଯ୍ୟକ୍ରମର ମୋଟା ମୋଟି ଅଭିମୁଖ୍ୟ । ଆକୁମାରୀ ହିମାଚଳ ଭାରତପରି ଏକ ବିରାଟ ଭୂଖଣ୍ଡର କୋଟି କୋଟି ଜନତାଙ୍କ ପ୍ରାଣରେ ଏହି ନୂତନ କାର୍ଯ୍ୟକ୍ରମ ଯେଉଁ ନବୀନ ସ୍ପନ୍ଦନ ସୃଷ୍ଟି କରିଛି ତା'ର ପଟାନ୍ତର ନାହିଁ । କୃଷି କ୍ଷେତ୍ରର ମେହନତକାରୀ ଶ୍ରମିକ, ବିଦ୍ୟାଳୟର ଛାତ୍ରଛାତ୍ରୀ, ଭୂମିହୀନ ଗରିବ ହରିଜନ ଓ ଆଦିବାସୀ, ବିଶେଷକରି ବନ୍ଧୁଆ ଶ୍ରମିକ, ଦାଦନ ଶ୍ରମିକ, ଠିକାବାସୀ ଶ୍ରମିକ ଏବଂ କଳକାରଖାନାର ଶ୍ରମିକମାନଙ୍କପାଇଁ ଏ କାର୍ଯ୍ୟକ୍ରମରେ ଯେତିକି 'ମା ଭୈ' ବା ବରାଭୟ ଓ ଆଶ୍ୱାସନା ଅଛି, କଳାବଜାରୀ, ମହଜୁତକାରୀ, ଅପମିଶ୍ରଣକାରୀ, ଦୁର୍ନୀତିଗ୍ରସ୍ତ ଅସାଧୁ ବ୍ୟବସାୟୀ ଓ ଅନ୍ୟାନ୍ୟ ଅସାମାଜିକ ଶ୍ରେଣୀର ଲୋକଙ୍କପାଇଁ ଏହା ସେତିକି ଆତଙ୍କ ସୃଷ୍ଟି କରିଛି । ଯୁଗ ଯୁଗଧରି ଯେଉଁ ବୈଷମ୍ୟ, ଯେଉଁ ବ୍ୟବଧାନ, ମଣିଷ-ମନର ଯେଉଁ ଅହେତୁକୀ ଅଭୀପ୍ସା କାମନା ଆମ ସମାଜକୁ ତଥାକଥିତ ଥିବାବାଲା (haves) ଓ ନଥିବାବାଲା (have nots) ନାମକ ଦୁଇଗୋଟି ପୃଥକ୍ ଶ୍ରେଣୀରେ ବିଭକ୍ତ କରି ଗୋଟିଏ ଶ୍ରେଣୀକୁ ଅନ୍ୟ ଗୋଟିଏ ଶ୍ରେଣୀଦ୍ୱାରା ଶୋଷିତ କରି ରଖିଥିଲା, ସେ ବୈଷମ୍ୟ, ସେ ବ୍ୟବଧାନ ଓ ସେ କାମନାର ମୂଳୋତ୍ପାଟନ କରି ଏକ ସୁସ୍ଥ ଶ୍ରେଣୀହୀନ, ସମଦର୍ଶନକାରୀ ସମାଜଗଠନ କରିବାପାଇଁ ଏଥିରେ ଦୃଢ଼ ଚେତାବନୀ ଦିଆଯାଇଛି ; ଯେଉଁ ବାଣୀ, ଯେଉଁ ଚେତାବନୀ ଭଗବତ୍ ଗୀତାର ପଞ୍ଚମ ଅଧ୍ୟାୟରେ ଚମତ୍କାରଭାବେ ବର୍ଣ୍ଣନା କରାଯାଇଛି ;

ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ।

ସରଳ ଓଡ଼ିଆରେ ଏହାର ଅର୍ଥ ହେଲା, ପଣ୍ଡିତମାନେ ବିଦ୍ୟାବିନୟ ସମ୍ପନ୍ନ ବ୍ରାହ୍ମଣ, ଗାଈ, ହାତୀ, କୁକୁର ଏବଂ ଚଣ୍ଡାଳ—ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିଥାଆନ୍ତି ।

ଏକ ସୁସ୍ଥ, ବଳିଷ୍ଠ ଜାତୀୟ ଅର୍ଥନୀତି ଗଠନ କରିବା କ୍ଷେତ୍ରରେ ଶ୍ରମିକ ସମାଜର ଯେ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ତାହା ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମରେ ସୁସ୍ପଷ୍ଟ ଭାବେ ପ୍ରତିଫଳିତ । କୋଡ଼ିଏ ଦଫା ସମ୍ବଳିତ କାର୍ଯ୍ୟକ୍ରମରେ ପାଞ୍ଚୋଟି ଦଫାର କାର୍ଯ୍ୟକ୍ରମ 'ଶ୍ରମିକ ଓ ତା'ର ଜୀବନର ସମ୍ପୂର୍ଣ୍ଣ ମାନବୃଦ୍ଧି' ପାଇଁ ଉଦ୍ଦିଷ୍ଟ । ଏକ ଦିଗରେ ସଙ୍ଗଠିତ ଶିଳ୍ପ କ୍ଷେତ୍ରରେ ଶାନ୍ତି ଶୃଙ୍ଖଳା ବଜାୟ ରଖି ଏକ ସୁସ୍ଥ ଔଦ୍ୟୋଗିକ ସମ୍ପର୍କ ପ୍ରତିଷ୍ଠା କରିବା, ତା ମାଧ୍ୟମରେ ଉତ୍ପାଦିକା ଶକ୍ତିର ପୂର୍ଣ୍ଣ ବିନିଯୋଗ କରିବା ଏବଂ ଅତ୍ୟାବଶ୍ୟକୀୟ ଦ୍ରବ୍ୟଗୁଡ଼ିକର ଉତ୍ପାଦନ ଅବ୍ୟାହତ ରଖି ଜାତୀୟ ଅର୍ଥନୀତିକୁ ସୁଦୃଢ଼ କରିବା । ଅନ୍ୟ ଦିଗରେ ଅସଙ୍ଗଠିତ ଶିଳ୍ପ କ୍ଷେତ୍ରରେ ଯେଉଁ ଶ୍ରମିକ—ଯଥା: କୃଷି ଶ୍ରମିକ, ଲବଣ ଶ୍ରମିକ, ପରିବହନ ଶ୍ରମିକ, ବିଡ଼ି ଓ ଗୁଡ଼ାଖୁ କାରଖାନାର ଶ୍ରମିକ, ବାଉଁଶ କଟାଳି ଶ୍ରମିକ, ବୃହତ୍ କଳ ତଥା ମୁଦ୍ରଣ ଓ ଛାପାଖାନାର ଶ୍ରମିକ—ଯେଉଁମାନେ ଅସଙ୍ଗଠିତ ହୋଇଥିବାରୁ ବହୁଦିନ ଧରି ସେମାନଙ୍କର ନ୍ୟାଯ୍ୟ ଦାବୀରୁ ସାଧାରଣ ମଣିଷ ହିସାବରେ ସେମାନଙ୍କ ସର୍ବନିମ୍ନ ଆବଶ୍ୟକତା ପୂରଣରୁ ବଞ୍ଚିତ ହେଉଥିଲେ ସେମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ, ପାରିବାରିକ ତଥା ସାମାଜିକ ନିରାପତ୍ତା ସାବ୍ୟସ୍ତ କରିବା ସେମାନଙ୍କପାଇଁ ଏକ ତୃପ୍ତିପୂର୍ଣ୍ଣ ଓ ମନୋଜ୍ଞ କାର୍ଯ୍ୟ ପରିବେଶ ସୃଷ୍ଟିକରି ତା' ମାଧ୍ୟମରେ ସେମାନଙ୍କୁ ଅଧିକ ତାଲିମପ୍ରାପ୍ତ ଓ କୁଶଳୀକରି ଶିଳ୍ପାନୁଷ୍ଠାନ ସହ ସର୍ବାନ୍ତଃକରଣରେ ସାମିଲ୍ କରାଇବା ହେଉଛି ଏ କାର୍ଯ୍ୟକ୍ରମର ବୈଶିଷ୍ଟ୍ୟ ।

ଏହି ଗୋଟିଏ ବର୍ଷ ଭିତରେ ଦୁଇ କୋଟି ଜନତାଙ୍କର ପ୍ରାଣବନ୍ଦ୍ୟ, ଆଶା ଆକାଂକ୍ଷାର ଉତ୍ସ ଆମର ମହୀୟସୀ ନେତ୍ରୀ ମୁଖ୍ୟମନ୍ତ୍ରୀଙ୍କର ବଳିଷ୍ଠ ନେତୃତ୍ୱରେ କୋଡ଼ିଏସୂତ୍ରୀ କାର୍ଯ୍ୟକ୍ରମକୁ ସଫଳ ରୂପାୟନ ଦେବାରେ ଆମର ରାଜ୍ୟ ଆଗେଇ ଆସିଛି । ଯୁଗ ଯୁଗ ଧରି ଯେଉଁ ଘୃଣ୍ୟ ସାମାଜିକ ବ୍ୟାଧି ଓ ଅବର୍ଜନା ଆମ ଭିତରେ ଜମାଟ ବାନ୍ଧି ରହିଥିଲା, ଆମର ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ କଳୁଷିତ ଓ ଅନଗ୍ରସର କରି ରଖିଥିଲା, ସେଗୁଡ଼ିକର ସମ୍ପୂର୍ଣ୍ଣ ବିଲୋପପାଇଁ ସେ ଆଜି ଦୃଢ଼ ପ୍ରତିଜ୍ଞ । ତା'ର ଫଳ ସ୍ୱରୂପ ଏ ରାଜ୍ୟରେ ଗୋତିପ୍ରଥା ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଛି । ଯୌତୁକ ଦାବି ଓ ଯୌତୁକ ଗ୍ରହଣ ଆଇନ ଅନୁଯାୟୀ ନିଷିଦ୍ଧ କରାଯାଇଛି । ବିଶେଷକରି ଏକ ପୁରୁଷ ପ୍ରଧାନ ସମାଜରେ ନାରୀକୁ ପୁରୁଷଠାରୁ ନ୍ୟୂନ ବୋଲି ବିବେଚନାକରି ଯେଉଁ କୃତ୍ରିମ ବ୍ୟବଧାନ ସୃଷ୍ଟି କରାଯାଇଥିଲା ସେ ବ୍ୟବଧାନକୁ ଦୂର କରି ସମାଜର ସବୁ କ୍ଷେତ୍ରରେ ଉଭୟଙ୍କୁ ସମାନ ଅଧିକାର, ସମାନ ସୁବିଧା ସୁଯୋଗ ଦେବାପାଇଁ ଆଇନ ପ୍ରଣୟନ କରାଯାଇଛି । କୃଷି କ୍ଷେତ୍ରରେ ନିଯୁକ୍ତ ଅଗଣିତ ଶ୍ରମିକଙ୍କର ସର୍ବନିମ୍ନ ମଜୁରୀ ହାର ବଢ଼ା ଯାଇଛି, କୃଷି ଶ୍ରମିକଙ୍କ ବ୍ୟତୀତ ସ୍ୱଳ୍ପବେତନ ଭୋଗୀ ଅଥଚ ଅସଙ୍ଗଠିତ ଅନ୍ୟାନ୍ୟ ତଫସିଲଭୁକ୍ତ ନିଯୁକ୍ତି କ୍ଷେତ୍ରରେ ନିୟୋଜିତ ଓ ନିଯୁକ୍ତ ଶ୍ରମିକମାନଙ୍କର ଜୀବନକୁ ଟିକିଏ ସହଜ ଓ ସ୍ୱାଚ୍ଛନ୍ଦ କରିବାପାଇଁ ସର୍ବନିମ୍ନ ମଜୁରୀ ନିର୍ଦ୍ଧାରଣ ଓ ଆବଶ୍ୟକମତେ ମଜୁରୀ ସଂଶୋଧନ କରିବାପାଇଁ ପଦକ୍ଷେପମାନ ନିଆଯାଇଛି । ସର୍ବନିମ୍ନ ମଜୁରୀ ଉପଦେଷ୍ଟା ପରିଷଦକୁ ଅଧିକ ସକ୍ରିୟ ଓ ଉଜ୍ଜୀବିତ କରାଯାଇଛି । ସର୍ବନିମ୍ନ ମଜୁରୀ ଆଇନର ବ୍ୟବସ୍ଥାଗୁଡ଼ିକୁ ବହୁଳଭାବେ ପ୍ରଚାରିତ କରି ଉଭୟ ନିଯୋକ୍ତା ଓ ନିଯୁକ୍ତଙ୍କ ମଧ୍ୟରେ ଏକ ସାମାଜିକ ଚେତନା ଜାଗ୍ରତ କରିବାପାଇଁ ପଦକ୍ଷେପ ନିଆଯାଇଛି । ପ୍ରଶିକ୍ଷଣ ମାଧ୍ୟମରେ ସଫଳ ସାଙ୍ଗଠନିକ ନେତୃତ୍ୱ ସୃଷ୍ଟି କରିବାପାଇଁ ତାଲିମ କେନ୍ଦ୍ରମାନ ଆୟୋଜିତ କରାଯାଇଛି । ଏ ସବୁର ଉଦ୍ଦେଶ୍ୟ ହେଲା, ସର୍ବନିମ୍ନ ମଜୁରୀ ଆଇନ ବା ଯେ କୌଣସି ଶ୍ରମ ଆଇନ ସାମାଜିକ ନ୍ୟାୟ ପ୍ରତିଷ୍ଠା କ୍ଷେତ୍ରରେ ଯେପରି ସକ୍ରିୟ ମାଧ୍ୟମ ରୂପେ କାର୍ଯ୍ୟ କରିବ ।

ଶ୍ରମିକ ଏକ ପଣ୍ୟ ବସ୍ତୁ ନୁହେଁ । ସେ ଜଣେ ମଣିଷ । ସର୍ବୋପରି ସେ ଜଣେ ସ୍ୱାଧୀନ ନାଗରିକ । ଜଣେ ସ୍ୱାଧୀନ ନାଗରିକ ଭାବରେ ଏକ ଐକ୍ୟବଦ୍ଧ, ସଂହତ, ଐଶ୍ୱର୍ଯ୍ୟଶାଳୀ ନୂତନ ଭାରତବର୍ଷ ଗଠନ କରିବା ପାଇଁ ସାରା ଦେଶରେ ଆଜି ଯେଉଁ ଆହ୍ୱାନ ଆସିଛି ସେଥିରେ ନିଜକୁ ସର୍ବମତେ ସମ୍ପୃକ୍ତ କରିବାପାଇଁ ପ୍ରତ୍ୟେକ ଭାରତୀୟ ଶ୍ରମିକ ଗର୍ବ ବୋଧ କରିବା ଉଚିତ୍ । ଏ ଥିଲା ଗତ ଜୁଲାଇ ୧୯୭୫ରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଶ୍ରମ ମନ୍ତ୍ରୀମାନଙ୍କର ସମ୍ମିଳନୀରେ ଆମ ପ୍ରଧାନମନ୍ତ୍ରୀଙ୍କର ନବଜୀବନ ସଞ୍ଚାରଣୀ ବାଣୀ । ଏହି ବାର୍ତ୍ତାକୁ ଏକ ବାସ୍ତବ ରୂପ ଦେବାପାଇଁ ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମର ୧୫ ଦଫାରେ "ଶିଳ୍ପ କ୍ଷେତ୍ରରେ ବିଶେଷକରି ବିପଣୀସ୍ତରରେ ଓ

ଉତ୍ପାଦନ କାର୍ଯ୍ୟକ୍ରମଗୁଡ଼ିକରେ ଶ୍ରମିକର ସଂପୃକ୍ତି ବିଷୟ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇଛି । ନିଜ ସହ, ନିଜ ପାରିପାର୍ଶ୍ୱ ସହ ଏବଂ ପରିଶେଷରେ ଯେଉଁ ଶିଳ୍ପ କ୍ଷେତ୍ରରେ ଶ୍ରମିକ ନିଯୁକ୍ତିକୁ ଏକ ଅନୁଷ୍ଠାନ ଭାବେ ବିଚାରକୁ ଆଣି ତା'ର ସମସ୍ୟାଗୁଡ଼ିକ ସହ, ତା'ର ଔଦ୍ୟୋଗିକ ଉତ୍ଥାନ ପତନ ଓ ହାନିଲାଭ ସହ କିଭଳି ଭାବରେ ନିଜକୁ ପୂର୍ଣ୍ଣଭାବରେ ସାମିଲ କରି ପାରିବ ତାହା ହେଉଛି ଏ କାର୍ଯ୍ୟକ୍ରମର ନିର୍ଦ୍ଦେଶ । କାରଣ ଫଳରେ ଉତ୍ପାଦନ, ବିଶେଷକରି ଅତ୍ୟାବଶ୍ୟକୀୟ ଦ୍ରବ୍ୟଗୁଡ଼ିକର ଉତ୍ପାଦନ ଅବ୍ୟାହତ ରହିବ, ଉତ୍ପାଦନ ଖର୍ଚ୍ଚ କମାଯାଇ ଗୁଣାତ୍ମକ ଦ୍ରବ୍ୟ ଉତ୍ପାଦିତ ହୋଇ ପାରିବ, ପରିଚାଳନା କର୍ତ୍ତୃପକ୍ଷ ଏବଂ ଶ୍ରମିକମାନଙ୍କ ମଧ୍ୟରେ ଏକ ଭଲ ବୁଝାମଣା ଓ ସଦ୍‌ଭାବ ସମ୍ପନ୍ନ ପରିବେଶ ସୃଷ୍ଟି କରାଯାଇ ପାରିବ—ଏ ସମସ୍ତ ହେଉଛି ଏ କାର୍ଯ୍ୟକ୍ରମର ଆଭିମୁଖ୍ୟ । ଏହି ବିଷୟଗୁଡ଼ିକୁ ଆଖି ଆଗରେ ରଖି ଗତ ତା ୩୦ । ୧୦ । ୧୯୭୫ରିଖରେ କେନ୍ଦ୍ର ସରକାର ଏବଂ ତା ୨୫।୧୧।୧୯୭୫ ରିଖରେ ରାଜ୍ୟ ସରକାର ଦୁଇ ଗୋଟି ପୃଥକ ଶଠା ଯୋଜନା ପ୍ରଣୟନ କରିଛନ୍ତି । ସ୍ୱତନ୍ତ୍ର ବିଜ୍ଞପ୍ତି ଦ୍ୱାରା ଏ ଯୋଜନାକୁ ବିଭିନ୍ନ କ୍ଷେତ୍ରରେ ବଳବତ୍ତର କରାଯାଇଛି । ଉଭୟ ଯୋଜନାର ମୂଳ ଓ ଉଦ୍ଦେଶ୍ୟ ଏକ । କେବଳ କାର୍ଯ୍ୟରୂପ ଭିନ୍ନ ମାତ୍ର । ରାଜ୍ୟସ୍ତରୀୟ ଯୋଜନା ୨୫୦ ଜଣରୁ ଊର୍ଦ୍ଧ୍ୱ ଶ୍ରମିକ କାର୍ଯ୍ୟ କରୁଥିବା ଶିଳ୍ପାନୁଷ୍ଠାନମାନଙ୍କରେ ଲାଗୁ କରାଯାଇଛି । ରାଷ୍ଟ୍ରାୟତ୍ତ ସଂସ୍ଥାମାନଙ୍କରେ ବାଧ୍ୟତାମୂଳକ ଭାବେ କାର୍ଯ୍ୟକାରୀ କରିବାପାଇଁ ଏହାକୁ ନିର୍ଦ୍ଦେଶ ଦିଆଯାଇଛି । ଯୋଜନାର କାର୍ଯ୍ୟକାରିତା ଅନୁଧ୍ୟାନ କରିବାପାଇଁ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ ରାଜ୍ୟସ୍ତରୀୟ ମନ୍ତ୍ରୀମଣ୍ଡଳୀୟ ସବକମିଟି ଗଠନ କରାଯାଇଛି । ଗତ ମଇ ୪ ତାରିଖରେ ଅନୁଷ୍ଠିତ କମିଟିର ଏକ ବୈଠକର ଆଲୋଚନାରୁ ଜଣା ପଡ଼ିଛି ଯେ ରାଜ୍ୟର ସମସ୍ତ ଉତ୍ପାଦନଶୀଳ ସରକାରୀ ଉଦ୍ୟୋଗରେ ଏହି ଯୋଜନା କାର୍ଯ୍ୟକାରୀ ହୋଇଛି । ଏତଦ୍‌ବ୍ୟତୀତ ରାଜ୍ୟ ମଧ୍ୟରେ ଥିବା କେନ୍ଦ୍ର ସରକାରଙ୍କ ଅଧୀନ ସମସ୍ତ ଶିଳ୍ପ ସଂସ୍ଥା, ୧୮ଟି ବେସରକାରୀ ସଂସ୍ଥା, ୩ ଗୋଟି ସମବାୟ ସଂସ୍ଥା ଓ ୨୩ ଗୋଟି ଖଣି ଖାଦାନ ସଂସ୍ଥାରେ ଏହି ଯୋଜନା କାର୍ଯ୍ୟକାରୀ ହୋଇଛି । ପ୍ରତ୍ୟେକ ସ୍ତରରେ ଏହି ଯୋଜନାର ଉପାଦେୟତା ଆଜି ଉପଲବ୍ଧି କରାଯାଉଛି । ରାଜ୍ୟ ଶ୍ରମ କମିଶନର ଭାବରେ ଯେଉଁ ଯେଉଁ ଶିଳ୍ପ ସଂସ୍ଥାମାନଙ୍କୁ (ଯେଉଁଠାରେ ଏହି ଯୋଜନା ପ୍ରଯୁଜ୍ୟ) ମୁଁ ପରିଦର୍ଶନରେ ଯାଇଛି ସେଠାରେ ଏହା ଦେଖିବାକୁ ମିଳୁଛି ଯେ, ଉଭୟ ପରିଚାଳନା କର୍ତ୍ତୃପକ୍ଷ ଓ ଶ୍ରମିକ ପ୍ରତିନିଧିମାନେ ଏପରି ଏକ ପ୍ରଗତିଶୀଳ ଯୋଜନାକୁ ଉତ୍ସାହ ଓ ଆଗ୍ରହର ସହିତ ଗ୍ରହଣକରି ବିଭାଗୀୟ ପରିଷଦ ଓ ଯୌଥ ପରିଷଦ କରିଆରେ ଶାନ୍ତିପୂର୍ଣ୍ଣ ଓ ଗଣତାନ୍ତ୍ରିକ ଉପାୟରେ ସେମାନଙ୍କର ସମସ୍ତ ସମସ୍ୟାର ସମାଧାନ ପାଇଁ ଆଗେଇ ଆସିଛନ୍ତି । ପରିଷଦର ବୈଠକଗୁଡ଼ିକରେ ଶିଳ୍ପ କ୍ଷେତ୍ରରେ ଶାନ୍ତି ପ୍ରତିଷ୍ଠା ଓ ଉତ୍ପାଦନ ବୃଦ୍ଧିପାଇଁ ବାସ୍ତବ ଯୋଜନାମାନ ପ୍ରଣୟନ କରୁଛନ୍ତି । ଏହା ଅତ୍ୟନ୍ତ ଆଶାପ୍ରଦ । ଏ ଯୋଜନା ପୂର୍ଣ୍ଣ ଭାବରେ କାର୍ଯ୍ୟକାରୀ ହେଲେ ଶିଳ୍ପ କ୍ଷେତ୍ରରେ ପରସ୍ପର ବୁଝାମଣା ଯୋଗୁ ଯେଉଁ ସାମୟିକ ସମସ୍ୟାଗୁଡ଼ିକ ଉପୁଜିଥାଏ ସେଗୁଡ଼ିକର ସମାଧାନ ସହଜ ହେବ, ଶ୍ରମିକ ତା'ର ସମସ୍ତ ନିଷ୍ଠା ଓ ଆଗ୍ରହ ଢାଳି ଦେଇ ଶିଳ୍ପ ସଂସ୍ଥାକୁ ସୁଦୃଢ଼ କରିବାକୁ ଆଗେଇ ଆସିବ । ସେ ଉପଲବ୍ଧି କରିବ ଯେ, ତା'ର ନିଜର କିଛି ସ୍ୱତନ୍ତ୍ର ସ୍ୱାର୍ଥ ନାହିଁ, ତା'ର ସ୍ୱାର୍ଥ ହେଉଛି ଶିଳ୍ପ ସଂସ୍ଥାର ସ୍ୱାର୍ଥ, ଉଭୟ ଏକ ଓ ଅଭିନ୍ନ ।

ଜରୁରୀକାଳୀନ ପରିସ୍ଥିତିରେ ସଂପୃକ୍ତିକରଣ ମାଧ୍ୟମରେ ଅଧିକ ଉତ୍ପାଦନ, ଅଧିକ ଉତ୍ପାଦନ ମାଧ୍ୟମରେ ପୁଞ୍ଜି ଗଠନ ଓ ଅଧିକ ପୁଞ୍ଜି ବିନିଯୋଗ ଦ୍ୱାରା ଦେଶରେ ଅର୍ଥନୀତିକୁ ସୁଦୃଢ଼ୀକରଣ, ଯାହାଦ୍ୱାରା ଦେଶର ଐକ୍ୟ ଓ ସଂହତି ଅକ୍ଷୁର୍ଣ୍ଣ ରହିବ, ଏକଥା ଆଜି ଅଧିକ ସ୍ପଷ୍ଟଭାବେ ବୁଝାଇ କହିବାର ଆବଶ୍ୟକତା ନାହିଁ ।

ରାଜ୍ୟ ଶ୍ରମ କମିଶନର
ଭୁବନେଶ୍ୱର

# ସୋର ତହସିଲ ଆଗେଇ ଚାଲିଛି

— ଶ୍ରୀ ଶ୍ୟାମସୁନ୍ଦର ମିଶ୍ର

ଜାତିର ଜନକ ମହାତ୍ମା ଗାନ୍ଧୀ କହିଥିଲେ ଦେଶର ଅର୍ଥନୈତିକ ପ୍ରଗତି ଘଟାଇବାକୁ ହେଲେ ଆମମାନଙ୍କୁ ଗାଁକୁ ଫେରିଯିବାକୁ ପଡ଼ିବ । ଏହା ଚିରନ୍ତନ ସତ୍ୟ ଯେ ଗ୍ରାମବହୁଳ ଭାରତବର୍ଷର କୋଟି କୋଟି ଦରିଦ୍ର ଜନତାର ଅର୍ଥନୈତିକ ଭିତ୍ତି ସୁଦୃଢ଼ ନହେଲେ ସମଗ୍ର ଦେଶ ବା ଜାତିର ସମୂହ ଉନ୍ନତି ଆଶା କରିବା ବିଡ଼ମ୍ବନା ମାତ୍ର । ଯୁଗେ ଯୁଗେ ଏହି ପଲ୍ଲୀ ଗ୍ରାମଭିତ୍ତିକ ଭାରତୀୟ ଅର୍ଥନୀତି ଏବଂ ପରମ୍ପରାର ପ୍ରାଣକେନ୍ଦ୍ର ରୂପେ କାର୍ଯ୍ୟକରି ଆସିଛି ।

୧୯୭୫ ମସିହା ଜୁଲାଇ ଏକ ତାରିଖ ଭାରତ ଇତିହାସରେ ଏକ ସ୍ମରଣୀୟ ଦିବସ ହୋଇ ରହିବ । ଆମର ପ୍ରିୟ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କର ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ଏ ଦେଶର କୋଟି କୋଟି ଚିର ଅବହେଳିତ, ନିଷ୍ପେଷିତ, ଦୁଃସ୍ଥ, ଦରିଦ୍ର ଜନତାଙ୍କ ଆର୍ଥିକ ଉନ୍ନତି କଳ୍ପେ ସମଗ୍ର ଜାତି ଆଗରେ ଉପସ୍ଥାପିତ କରିଥିଲେ । ଏହି ଯୁଗାନ୍ତକାରୀ ଆହ୍ୱାନରେ ଆଜି ସମଗ୍ର ଜାତି ଉଦ୍‌ବୁଦ୍ଧ । ସରକାରୀ କର୍ମଚାରୀ, କୃଷକ, ଶ୍ରମିକ ପ୍ରତ୍ୟେକ ନିଜ ନିଜ ସ୍ତରରେ ଶୃଙ୍ଖଳାବଦ୍ଧର ଚରମ ଉତ୍କର୍ଷତା ପ୍ରଦର୍ଶନ କରି ଆଗେଇ ଚାଲିଛନ୍ତି ନିଜ କର୍ତ୍ତବ୍ୟ ପଥରେ ଏହି ପରିକଳ୍ପିତ କାର୍ଯ୍ୟକ୍ରମର ଏକ ସଫଳ ରୂପାୟନପାଇଁ ।

ବାଲେଶ୍ୱରଠାରୁ ୩୩ କି: ମି: ଦୂରରେ ସୋର ତହସିଲ ଅବସ୍ଥିତ । ଏହି ତହସିଲର ପ୍ରାୟ ଶତକଡ଼ା ୮୦ ଭାଗ ଲୋକ ନିରକ୍ଷର । ତହସିଲରେ ବାସ କରୁଥିବା ନିଃସହାୟ ବୃଦ୍ଧ, ବୃଦ୍ଧା, ଭୂମିହୀନ ଗୃହଶୂନ୍ୟମାନଙ୍କର ଅବସ୍ଥାର ପରିବର୍ତ୍ତନ ନିମନ୍ତେ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ବର୍ତ୍ତମାନ ସୁଦ୍ଧା ୧,୨୭୫ ଏକର ଘରଜମି ୧,୫୩୧ ଜଣ ଭୂମିହୀନ ଆଦିବାସୀ ହରିଜନ ଏବଂ ଅନ୍ୟ ସମ୍ପ୍ରଦାୟର ବ୍ୟକ୍ତିମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । ସବୁଠାରୁ ଉଲ୍ଲେଖଯୋଗ୍ୟ ଯେ ଏହି ଅଞ୍ଚଳରୁ ଯାଇଥିବା ୧୭ ଜଣ ଜବାନ, ଯେଉଁମାନେ କି ଦେଶମାତୃକାର ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବା ନିମନ୍ତେ ସଦାସର୍ବଦା ଜାଗ୍ରତ ପ୍ରହରୀ ପରି ସୀମାନ୍ତରେ କାର୍ଯ୍ୟ କରୁଛନ୍ତି, ସେହିମାନଙ୍କ ପରିବାରବର୍ଗଙ୍କ ମଧ୍ୟରେ କିଛି କିଛି ଘର ଜମି ବଣ୍ଟନ କରାଯାଇଛି । ମୁଣ୍ଡ ଗୋଞ୍ଜିବାକୁ ଖଣ୍ଡିଏ ସ୍ଥାନ ନଥିବା ଭଳି ୩୭୮ ଜଣ ଆଦିବାସୀ ହରିଜନ ଓ ଅନ୍ୟ ଜାତିର ଲୋକଙ୍କୁ ଏ ୪୨.୩୪ ଡେସିମିଲ ଭୂମି ଯୋଗାଇ ଦିଆଯାଇଛି । ଓଡ଼ିଶା ଭୂସଂସ୍କାର (ସଂଶୋଧନ) ଆଇନ ବଳବତ୍ତର ହେବା ପରେ ଏହି ତହସିଲରେ ଜମିର ସର୍ବୋଚ୍ଚ ଯୋତ ନିର୍ଦ୍ଧାରଣ କରାଯାଇ ବର୍ତ୍ତମାନ ସୁଦ୍ଧା ଯୋତ ବହିର୍ଭୂତ ଏ ୭୮.୧୯ ଡେସିମିଲ ଜମି ୨୨୧ ଜଣ ଭୂମିହୀନ ଆଦିବାସୀ ଏବଂ ହରିଜନମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । ଯୋତ ନିର୍ଦ୍ଧାରଣ କାର୍ଯ୍ୟକ୍ରମ ସମାପନ ପରେ ଏହି ତହସିଲରେ ପ୍ରାୟ ଅଧିକାଂଶ ଭୂମିହୀନ କିଛି କିଛି ଭୂମି ପାଇପାରିବେ । ଏହି କାର୍ଯ୍ୟକ୍ରମକୁ ଦ୍ରୁତ ଗତିରେ ଅଗ୍ରସର କରାଯାଉଛି । ପର୍ଯ୍ୟାୟକ୍ରମେ ଏହି ଭୂବଣ୍ଟନ କାର୍ଯ୍ୟ ସମାପ୍ତ କରାଯିବ ।

ଜୁଲାଇ ୨୭ ତାରିଖ ଦିନ ସୋର ତହସିଲ ପ୍ରାଙ୍ଗଣ ଲୋକାରଣ୍ୟ । ଅସହାୟ ବୃଦ୍ଧ ବୃଦ୍ଧାଙ୍କର ଏକ ଧାଡ଼ି ଚାଲିଛି ସୋର ତହସିଲ ଅଭିମୁଖେ । ତାଙ୍କ ପଛକୁ ଆଦିବାସୀ ହରିଜନ ଭାଇ ଭଉଣୀମାନେ ଖୁସି ମନରେ ଚାଲିଆସନ୍ତି । ଏହି ଦିନଟି ଥିଲା ୧୦୦ ଜଣ ବୃଦ୍ଧ ବୃଦ୍ଧା ଏବଂ ୭୦ ଜଣ



ସୋର ତହସିଲର ମୁଗଲ ଗ୍ରାମରେ ଗୃହହୀନ ହରିଜନ ଲୋକଙ୍କ ପାଇଁ ନିର୍ମିତ ନୂତନ ବସତି ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର ଉଦ୍‌ଘାଟନ କରୁଛନ୍ତି ।

ଆଦିବାସୀ ଭାଇ ଭଉଣୀଙ୍କ ପାଇଁ ଏକ ସ୍ମରଣୀୟ ଦିବସ । ଶିକ୍ଷା ମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର, କେନ୍ଦ୍ରାଞ୍ଚଳ ରାଜସ୍ୱ କମିଶନର, ବାଲେଶ୍ୱର ଜିଲ୍ଲାପାଳ, ସୋର ତହସିଲଦାର ଏବଂ ବିଶିଷ୍ଟ ସାମ୍ବାଦିକଙ୍କ ଗହଣରେ ଏମାନଙ୍କ ମଧ୍ୟରେ ବାର୍ଦ୍ଧକ୍ୟ ଭତ୍ତା ଏବଂ ପଟ୍ଟା ବଣ୍ଟନ କରାଗଲା ।

ଜଣେ ସାମ୍ବାଦିକ ବନ୍ଧୁଙ୍କର ପ୍ରଶ୍ନରେ ବାର୍ଦ୍ଧକ୍ୟ ଭତ୍ତା ମଞ୍ଜୁର ହୋଇଥିବା ଜଣେ ବୃଦ୍ଧା ଅଶ୍ରୁସିକ୍ତ ନୟନରେ ଉତ୍ତର ଦେଲେ "ମୋର ମନେ ହେଉଛି ସ୍ୱର୍ଗରେ ଥାଇ ମୋ ସ୍ୱାମୀ ଏହି ପଚିଶ ଟଙ୍କା ମୋ ନିକଟକୁ ପଠାଉଛନ୍ତି ।"

ଶ୍ରୀମତୀ ଖିସ ମୁଦୁଲି ସୋର ତହସିଲ ଅନ୍ତର୍ଗତ ଦିଗନ୍ତର୍ଲିଙ୍ଗ ଗ୍ରାମର ଜଣେ ହରିଜନ ମହିଳା । ତାଙ୍କୁ ଅନ୍ୟ ଗ୍ରାମର ମହାଜନଙ୍କ ଓଳିତଳେ ମୁଣ୍ଡ ଟେକିବାକୁ ସମ୍ଭବ ନାହିଁ । ତାଙ୍କ ପରିବାରଙ୍କ ପାଇଁ ସରକାର ଏକ ଟାଇଲ ଘର କରି ଦେଇଛନ୍ତି । ସେହି ଦମ୍ପତି ଏପର୍ଯ୍ୟନ୍ତ କେବଳ ଗଛ ମୂଳେ ଏବଂ ପରଘର ଓଳିତଳେ କାଳାତିପାତ କରୁଥିଲେ । ତାଙ୍କ ପାଇଁ ବାସ୍ତବରେ ଏ ଏକ ସ୍ୱପ୍ନ ଭଳି ଲାଗୁଛି । ଏଇଠି ଶିକ୍ଷା ମନ୍ତ୍ରୀ କହିଲେ—ସେମାନଙ୍କର ପୁଅ ଝିଅ ନିକଟସ୍ଥ ସ୍କୁଲରେ ପଢ଼ିବେ । ସେଥିପାଇଁ ପଇସା ପଡ଼ିବ ନାହିଁ । ପାଠ୍ୟୋପକରଣ ସରକାର ଯୋଗାଇ ଦେବେ । କେବଳ ଏହି ଦମ୍ପତି ନୁହନ୍ତି ଏହି ତହସିଲର ପାଖାପାଖି ୭୦ ଜଣ ଗୃହହୀନ ଦମ୍ପତିଙ୍କୁ ସରକାର ଟାଇଲ ଘର ଯୋଗାଇ ଦେଇ ସାରିଲେଣି ଏବଂ ନିକଟରେ ସମସ୍ତ ଗୃହହୀନ ପରିବାରଙ୍କୁ ବାସଗୃହ ଯୋଗାଇ ଦିଆଯିବ । ସରକାର ଏହି ଭୂମିହୀନ ପରିବାରଙ୍କୁ କିଛି କିଛି ଚାଷ ଜମି ମଧ୍ୟ ଦେବାର ବନ୍ଦୋବସ୍ତ କରୁଛନ୍ତି ।

ସର୍ବନିମ୍ନ ମଜୁରି ଦେବା ଏହି ତହସିଲରେ କଡ଼ାକଡ଼ି ଭାବେ କାର୍ଯ୍ୟକାରୀ କରାଯାଉଛି । ଉପସ୍ଥ ସରକାରଙ୍କ ତରଫରୁ ପୁରୁଷ ଓ ସ୍ତ୍ରୀ ଶ୍ରମିକଙ୍କୁ ଦୈନିକ ଟ ୪ ହାରରେ ମଜୁରି ଦିଆଯାଉଛି । ଗରିବ ଲୋକମାନଙ୍କୁ କଣ୍ଟ୍ରୋଲ ଚାଉଳ, ଡାଲି, ଗହମ ଓ କିରୋସିନ ଯୋଗାଇ ଦିଆଯାଉଛି ।

ଶସ୍ତା ଦରରେ ଲୁଗା ମଧ୍ୟ ଯୋଗାଇ ଦିଆଯାଉଛି । ତହସିଲରେ ୨ଟି ବ୍ୟାଙ୍କ ସର୍ବସାଧାରଣଙ୍କ ସେବାରେ କାର୍ଯ୍ୟ କରିଆସୁଅଛି । ଫଳରେ ଗରିବ କୃଷକଙ୍କୁ ଅଳ୍ପ କେତେ ମହାଜନର ଦ୍ୱାରସ୍ଥ ହେବାକୁ ପଡ଼ୁନାହିଁ । ଉନ୍ନତ ସାର, ଉନ୍ନତ କୃଷି ଯନ୍ତ୍ରପାତି, ବଳଦ ଇତ୍ୟାଦି କିଣିବାପାଇଁ ସେମାନେ ସିଧା ସଳଖ ବ୍ୟାଙ୍କ ଅଥବା ଭୂ-ଉନ୍ନୟନ ବ୍ୟାଙ୍କ ପାଖରେ ପହଞ୍ଚୁଛନ୍ତି । ସମବାୟ ଶ୍ରେଣୀଭୁକ୍ତ ହେବାପାଇଁ କୃଷକମାନଙ୍କ ମଧ୍ୟରେ ପ୍ରବଳ ଆଗ୍ରହ ଦେଖା ଦେଇଛି । କାରଣ ସମବାୟ ଶ୍ରେଣୀଭୁକ୍ତ ହୋଇଗଲେ ଋଣ ପାଇବାର ବାଟ ଖୋଲା ହୋଇଯାଏ ।



ସୋର ତହସିଲ ଦେଓଳିଆ ଗ୍ରାମର ଅଧିବାସୀ ଓ ହରିଜନଙ୍କ ଗହଣରେ ଶିକ୍ଷାମନ୍ତ୍ରୀ ଶ୍ରୀ ଦାଶ ମହାପାତ୍ର

ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଭାଷାରେ ଦାରିଦ୍ର୍ୟ କରିବାପାଇଁ କୌଣସି ଯାଦୁର କାଠି ନାହିଁ । ଏକମାତ୍ର ଉପାୟ ହେଉଛି ନିର୍ମଳ ଦୃଷ୍ଟି, ଅଟଳ ସଂକଳ୍ପ ଏବଂ କଠୋର ଶୃଙ୍ଖଳା ଉପରେ ଆଧାରିତ କଠୋର ପରିଶ୍ରମ । ଏ ଏକ ବାସ୍ତବବାଦୀ ଚିନ୍ତାଧାରା । ଏହି ଚିନ୍ତାଧାରାକୁ ମନରେ ପୋଷଣ କରି ପ୍ରତ୍ୟେକେ ଯିଏ ଯେଉଁ କ୍ଷେତ୍ରରେ ଥାଉନା କାହିଁକି ନିଜ ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହେଲେ ଏ ଦେଶର ଦାରିଦ୍ର୍ୟ ବ୍ୟାଧି ଅଚିରେ ଦୂର ହୋଇପାରିବ ।

ସୋର ତହସିଲରେ ଉପରୋକ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ ଦିଗରେ ସୋର ତହସିଲର ତହସିଲଦାର ଓ ତାଙ୍କ ସହକର୍ମୀ ଏବଂ ସର୍ବୋପରି ବାଲେଶ୍ୱର ଜିଲ୍ଲାପାଳଙ୍କ ଉଦ୍ୟମ ଯଥାର୍ଥରେ ପ୍ରଶଂସନୀୟ ।

ସହକାରୀ ଜିଲ୍ଲା ଲୋକସମ୍ପର୍କ
ଅଫିସର, ବାଲେଶ୍ୱର

# ନବଜନ୍ମ

## ସ୍ୱାଧୀନତା ଦିବସ ଉପଲକ୍ଷେ ରାଜ୍ୟ ଲୋକ ସମ୍ପର୍କ ବିଭାଗ ସାଂସ୍କୃତିକ ସଂସଦର ଏକ ରସମୟ ଅବଦାନ

୧୯୭୬ ଅଗଷ୍ଟ ୧୪ ତାରିଖ ସନ୍ଧ୍ୟା ସାତଟାରେ ରବୀନ୍ଦ୍ର ମଣ୍ଡପରେ ରାଜ୍ୟ ଲୋକ ସଂପର୍କ ବିଭାଗ ସାଂସ୍କୃତିକ ସଂସଦ ତରଫରୁ "ନବଜନ୍ମ" ନାଟକଟି ମଞ୍ଚସ୍ଥ କରାଯାଇଥିଲା । ଏହି ନାଟକଟିକୁ ଉଦ୍‌ଘାଟନ କରିଥିଲେ ଆମର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ । ନାଟକଟିର ମୂଳ ଲେଖକ ବଙ୍ଗଳାର ସୁନାମଧନ୍ୟ ନାଟ୍ୟକାର ଶ୍ରୀ ବିଧୁ ମୁଖାର୍ଜୀ ଏବଂ ଏହାକୁ ଓଡ଼ିଆ ଭାଷାରେ ନାଟ୍ୟରୂପ ଦେଇଥିଲେ ବିଭାଗୀୟ ହେଡ୍ ଆସିଷ୍ଟାଣ୍ଟ ଶ୍ରୀ ଲୋକନାଥ ପ୍ରସାଦ ମହାନ୍ତି । ଶ୍ରୀ ଅଜିତ କୁମାର ଦାସ ଥିଲେ ଅଭିନୟର ନିର୍ଦ୍ଦେଶକ । ଶ୍ରୀ ବ୍ରଜମୋହନ ମିଶ୍ରଙ୍କ ପ୍ରଯୋଜନା, ଶ୍ରୀ ଦେବ କୁମାରଙ୍କର ସଙ୍ଗୀତ



ନିର୍ଦ୍ଦେଶନା ଓ ଗୁରୁ ଗଙ୍ଗାଧରଙ୍କ ନୃତ୍ୟ ନିର୍ଦ୍ଦେଶନାରେ ନାଟକଟି ମଞ୍ଚସ୍ଥ ହେବାର ଗୌରବ ଲାଭ କରିଥିଲା । ନୃତ୍ୟ ପରିଚାଳନା ଓ ଆବହ ସଙ୍ଗୀତ ଦାୟିତ୍ୱରେ ଥିଲେ ଚନ୍ଦ୍ର ଶେଖର,

ବିସ୍ୱନାଥ, ଦେବୀ, ପଦ୍ମନାଭ ଓ ଭଗବାନ । ମଞ୍ଚ ପରିକଳ୍ପନା କରିଥିଲେ ଶ୍ରୀ ଅସୀମ ବସୁ । ଭୁବନେଶ୍ୱରର "ସୁସ୍ୱାଲୋକ" ପ୍ରତିଷ୍ଠାନ ଆଲୋକ ସଂପାତ ଏବଂ ବାଂଶୀନାଥ ରୂପସଜ୍ଜାର ଦାୟିତ୍ୱ ବହନ କରିଥିଲେ ।





ନାଟକଟି ଚଉଦ ଓ ପନ୍ଦର ଡିସେମ୍ବର ରାତ୍ରରେ ଅନୁଷ୍ଠିତ ହୋଇଥିଲା । କହିବା ବାହୁଲ୍ୟ ଏହି ନାଟକଟିକୁ ଦେଖିବା ଲାଗି ଦୁଇଟିଯାକ ରାତି ଦର୍ଶକମାନଙ୍କ ଦ୍ୱାରା ରବୀନ୍ଦ୍ର ମଣ୍ଡପ ଏପରି ପରିପୂର୍ଣ୍ଣ ହୋଇ ଯାଇଥିଲା ଯେ ଠିଆହେବାପାଇଁ ମଧ୍ୟ ସାମାନ୍ୟତମ ସ୍ଥାନ ଖାଲି ନଥିଲା । ଲୋକ ସମ୍ପର୍କ ବିଭାଗରେ ଯେ ଏଭଳି ପ୍ରତିଭାବାନ ଅଭିନେତା ଅଛନ୍ତି—ତାହା ନାଟକଟିକୁ ଦେଖି ନଥିଲେ କେହି ବିଶ୍ୱାସ କରି ପାରିବେ ନାହିଁ । ପ୍ରତ୍ୟେକ ଭୂମିକା ତା' ନିଜ ସ୍ଥାନରେ ବେଶ ଭାବ ପ୍ରକାଶକ ଓ ରସୋଦ୍ଦୀପକ ହୋଇ ପାରିଥିଲା ।

ନାଟକଟିର ବିଷୟ ବସ୍ତୁ ଖୁବ ସରଳ ଓ ସର୍ବବୋଧଗମ୍ୟ । ଡ୍ରାଇଭର ସନାତନ (କ୍ଷେତ୍ରମୋହନ) ଜଣେ ମଦ୍ୟପ ଜୁଆଡ଼ି, ଅମିତବ୍ୟୟୀ, ବଦ୍‌ରାଗୀ ଏବଂ ଅବୁଝା ଯୁବକ । ଅଥଚ ସୁନ୍ଦରୀ ସୁକୋମଳ ହୃଦୟା ଜଣେ ଅନାଥିନୀ ବିଧବା ସୁରମା ଲାଗି ତା'ର ମନ ଭିତରେ ପ୍ରଣୟର ରାଗିଣୀ ବାଜି ଉଠିଛି । ସେମାନେ ରହୁଛନ୍ତି ଖୁବ ପାଖାପାଖି—କେବଳ ଗୋଟିଏ ତାଟିବାଡ଼ର ବ୍ୟବଧାନ ଦୁହିଁଙ୍କ ଭିତରେ । ହୁଏତ ସୁରମାର ଅନ୍ତର ସେକଥା ଜାଣିଛି—ମାତ୍ର ଏତେ ସହଜରେ ସେ ତାକୁ ସ୍ୱୀକୃତ ଦେଇ ପାରେନା । ସୁରମା କେବଳ ସୁନ୍ଦରୀ କୋମଳ ହୃଦୟା ପ୍ରଣୟିନୀଟିଏ ମାତ୍ର ନୁହେଁ—ସେ ଜଣେ ମନସ୍ୱିନୀ ରମଣୀ । ତା'ର ବ୍ୟକ୍ତିତ୍ୱରେ କୋମଳତା ଓ ଦୃଢ଼ତା ସମାନଭାବେ ରହିଛି । ସେ ଚାହେଁ—ସେ ଯାହା ଗଳାରେ ପ୍ରଣୟ ଓ ପରିଣୟର ବରଣମାଳା ଦେବ ତାକୁ ତା'ର ମନୋମତକରି ଗଢ଼ିବ ।



ତା'ର ପ୍ରଣୟବୋଧ ସାମାନ୍ୟ ମାଂସ କାମନା ବିଳାସ ନୁହେଁ—ବରଂ ସୃଜନଶକ୍ତି ସଂଜାତ ଏକ ସାଧ ସାଧନାର ଫଳସ୍ୱ । ହତାଶାର ମରୁଭୂମିରେ ଆଶ୍ରୟସ୍ଥଳୀ ଝାଙ୍କି ଦିଏ ସେ । ଶରତ୍ କାଗଜର ଠୁଙ୍ଗା ଭଳି ଜଳର ସ୍ରୋତେ ସୋତେ । ତୃଷିତ ଯୌବନର ରକ୍ତ ମାଂସର କ୍ଷୁଧାରେ ସେ ମଝେ ମଝେ ବିବ୍ରତ—କିନ୍ତୁ ଏହା ବୋଲି ସେ ବିକୃତମନା ନୁହେଁ—ଶୈଥିଲ୍ୟମନା ନୁହେଁ । ସନାତନ ଭିତରେ ସେ ଲକ୍ଷ୍ୟ କରିଛି ଗୋଟିଏ ସୁନ୍ଦର ଅସ୍ପଷ୍ଟ ପ୍ରବୃତ୍ତିକୁ । ମାତ୍ର ଲୋକ ସନାତନକୁ ସେ ଆଖି ଆଗରେ ଦେଖୁଛି—ସେ ସନାତନ ମଦ୍ୟପ, ବଦଚଳି, ଉଚ୍ଛୃଙ୍ଖଳ ଚରିତ୍ରରେ ଅଚେତନ—ଜୀବନ ଧର୍ମରେ ମଦ୍ୟପ ସୁଲଭ ଦାୟିତ୍ୱହୀନ । ଏଇ ଦାୟିତ୍ୱହୀନ ଅଥଚ ସହୃଦୟ ପ୍ରେମିକ ସନାତନ ଭୂମିକାରେ କ୍ଷେତ୍ରମୋହନ ଖୁବ୍ ଚମତ୍କାର ଅଭିନୟ କରିଛନ୍ତି । ଆଉ ବିଧବା ସୁରମା ଭୂମିକାରେ ସୁପରିଚିତା ଅଭିଜ୍ଞା ଅଭିନେତ୍ରୀ "ଶର"ଙ୍କ ଅଭିନୟ ସମ୍ବନ୍ଧେ ବିଶେଷ କହିବା ନିଷ୍ପ୍ରୟୋଜନ । ସୁରମା ଯେବେ ବାଛି ବସିଛି ସର୍ତ୍ତ—ପ୍ରଣୟର ସର୍ତ୍ତ—ଧନୁର୍ଭଙ୍ଗ ପଣ ପରି ଯାହା ସୁକଠିଣ କିନ୍ତୁ ସନାତନ ପକ୍ଷରେ ପରମକାମ୍ୟ—"ତୁମେ ଯଦି ମଦ ଛାଡ଼ିବ, ଜୁଆଖେଳ ଛାଡ଼ିବ, ଆଉ ଜାତି ପ୍ରଥା ଅନୁଯାୟୀ ପାଞ୍ଚଟି କରି ଟଙ୍କା ସଞ୍ଚୟ କରିବ.. .. .. .. .."



କହିବା ବାହୁଲ୍ୟ—ସନାତନ ପକ୍ଷରେ ଏ ପଣକୁ ପାଳନ କରିବା ଦୀର୍ଘତ ଗଣ୍ଡାନ୍ତର ନଥିଲା ।



ତା'ପରେ ଏହି ଦୁଇଟି ଚରିତ୍ରକୁ କେନ୍ଦ୍ର କରି ଘୂରି ବୁଲିଛନ୍ତି ଅନେକ ଉପଚରିତ୍ର । ବେକାର ମୋହନ ( ଲକ୍ଷ୍ମୀକାନ୍ତ ), ଅଶ୍ରୁଗଞ୍ଜୀ ଚମ୍ପା (ଲକ୍ଷ୍ମୀ), କାମୁକ ବୃଦ୍ଧ ବ୍ୟବସାୟୀ ଦଶରଥ (ଶରତ), ପୁଣି ନିଜ ଝିଅକୁ ଟୋପ ଦେଇ ଧୂର୍ତ୍ତ ଯୁବକମାନଙ୍କଠାରୁ ଅସାଧୁ ଉପାୟରେ ଅର୍ଥ ଆଦାୟ କରୁଥିବା ଦଲାଲ୍ ଗୋଷ୍ଠ ମହନ୍ତା ( ଉମାକାନ୍ତ ) —ସମସ୍ତେ ଏମାନେ ଅସହାୟ— ନରକ ଭିତରେ ପଞ୍ଚ ଆହୁତି ପାଉଛି ହେଉଛନ୍ତି । ସମସ୍ତଙ୍କୁ ନବଜନ୍ମ ଦେବାକୁ ଯାଇ ସୁରମା ଏକାଧାରରେ ପ୍ରଣୟିନୀ ଓ ଜନନୀର ମହାନ୍ ଦାୟିତ୍ୱ ବରଣ କରି ନେଇଛି ଏବଂ ପ୍ରକୃତରେ ଦର୍ଶକମାନଙ୍କ ଆଖିରେ ଏକ ନୂତନ ଅନୁଭୂତିର ନବଜନ୍ମ ହୋଇ ଯାଇଥିଲା ସେ ରାତିରେ ନାଟକଟିକୁ ଦେଖିଲାବେଳେ ।

ପ୍ରଧାନତଃ ନାଟକଟି ସରକାରଙ୍କର ସ୍ୱଳ୍ପ ସଞ୍ଚୟ ଯୋଜନା ଓ ବଂଶସୂଚୀ କାର୍ଯ୍ୟକ୍ରମର ପୃଷ୍ଠଭୂମି ଉପରେ ଆଧାରିତ । ଅଥଚ ନାଟକଟିର ରସମୟ ବସ୍ତୁକୁ ପ୍ରଚାରଧର୍ମୀତା କେଉଁଠି ହେଲେ ମଳିନ ବା କଳୁଷିତ କରିନାହିଁ । ମନୁଷ୍ୟର ସମସ୍ୟାକୁ ନେଇ ଯଦି ଲେଖକ ନିଜ ଅନୁଭୂତିକୁ କିଛି ନିସ୍ତାପର

ସବେ ଲେଖେ ତେବେ ତାହା ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରିବନହିଁ କହିବ । ଲୋକ ସମ୍ପର୍କ ବିଭାଗର କର୍ମଚାରୀମାନେ ସେମାନଙ୍କ ଆଫିସିଆଲ ଜଂଜାଳ ଓ କର୍ମବ୍ୟସ୍ତତା ଭିତରେ ଏପରି ଗୋଟିଏ ସୁନ୍ଦର ସରସ ସୁଅଭିନୀତ ନାଟକ ମଞ୍ଚସ୍ଥ କରି ରାଜଧାନୀର ଦର୍ଶକମାନଙ୍କ ଚିତ୍ତହରଣକରି ସରକାରଙ୍କର ଆଦର୍ଶକୁ ଉପସ୍ଥାପିତ କରିପାରିଲେ ଏଥିଲାଗି ଆମେ ସଂପୃକ୍ତ କର୍ମଚାରୀଗଣ—କ୍ଷେତ୍ରମୋହନ, ଲକ୍ଷ୍ମୀକାନ୍ତ ଉମାକାନ୍ତ, ବୃନ୍ଦାବନ, ଶରତ, ସନ୍ତୋଷ, ଅସିତ, ଲୋକନାଥ ଓ ବଭ୍ରୁ ବାବୁ ପ୍ରଭୃତିଙ୍କୁ ସାଧୁବାଦ ଅର୍ପଣ କରିବା ସଙ୍ଗେ ସଙ୍ଗେ ନାଟକଟିର ନେପଥ୍ୟରେ ରହି ଉତ୍ସାହ ଓ ସାହାଯ୍ୟ ପ୍ରଦାନ କରିଥିବା ଲୋକ ସମ୍ପର୍କ ବିଭାଗର ଲୋକପ୍ରିୟ ଡିରେକ୍ଟର ଶ୍ରୀ ଅଓ୍ୱଧ ନାରାୟଣ ଉଓ୍ୱାଲ, ଆଇ. ଏ. ଏସ୍., ଡେପୁଟି ସେକ୍ରେଟାରୀ ଶ୍ରୀ ସୁବ୍ରତ ଯୋଶୀ, ଏଡିଟର ମହାପାତ୍ର ନୀଳମଣି ସାହୁ, ଡେପୁଟି ଡାଇରେକ୍ଟର (ଫିଲ୍ମ) ଶ୍ରୀ ଆର୍ତ୍ତତ୍ରାଣ ସ୍ୱାଇଁ ଏବଂ ପ୍ରତ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଥିବା ଆସିଷ୍ଟାଣ୍ଟ ସେକ୍ରେଟାରୀ ଶ୍ରୀ ରାମଚନ୍ଦ୍ର ବେହୁରିଆ ଏବଂ ପି. ଏ. ଶ୍ରୀ ବ୍ରଜମୋହନ ମିଶ୍ରଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛୁ ।

ଆନନ୍ଦର କଥା ଯେ ନାଟକଟିକୁ ଦେଖି ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ଖୁବ୍ ଆନନ୍ଦ ପ୍ରକାଶ କରିଥିଲେ ଏବଂ ଲୋକ ସମ୍ପର୍କ ବିଭାଗର ଏଭଳି କାର୍ଯ୍ୟକ୍ରମକୁ ଉତ୍ସାହ ପ୍ରଦାନ କରିଥିଲେ ।

ମନୀଷା



ଭୁବନେଶ୍ୱର ନଂ ୧ ୟୁନିଟ କିଶୋର କ୍ଲବର ବନାସ୍ତୁକ ପୂଜା ।

କଳାକାର ଓ କଳାପ୍ରେମୀଙ୍କ ପକ୍ଷରେ—

# ଗତ ଜନ୍ମାଷ୍ଟମୀର ଏକ ଅବିସ୍ମରଣୀୟ ସନ୍ଧ୍ୟା

**ଶ୍ରୀ ପରୀକ୍ଷିତ ଜେନା**

ଗତ ଅଗଷ୍ଟ ୧୭ ତାରିଖ । ପବିତ୍ର ଜନ୍ମାଷ୍ଟମୀ ତିଥି—ମଙ୍ଗଳବାର—ଶ୍ରାବଣ ୨୬ ଦିନ ୧୮୯୮ ଶକାବ୍ଦ । ସନ୍ଧ୍ୟା ସାଢେ ଛଅଘଣ୍ଟାରେ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପ ଲୋକ ସମାଗମରେ ଭରି ଉଠିଥିଲା । ରାଜଧାନୀର ବହୁ କଳାପ୍ରେମୀ ଯୁବକ, ଯୁବତୀ, ପ୍ରୌଢ, ପ୍ରୌଢା, ବୃଦ୍ଧ, ବୃଦ୍ଧା ଖୁବ୍ ଗମ୍ଭୀର ହୃଦୟ ନେଇ ନୀରବ ଭାବେ ବସି ରହିଥିଲେ ପରମ ଉତ୍କଣ୍ଠାର ସହିତ । ରବୀନ୍ଦ୍ର ମଣ୍ଡପ ଭିତରେ ଏପରି ଗମ୍ଭୀର ଓ ଗମ୍ଭୀର ଉଦ୍ଭୃତ ପରିବେଶ ଅତୀତରେ ଖୁବ୍ କମ ଥର ଘଟିଥିବ ।

ସେ ସନ୍ଧ୍ୟାର ବିଶିଷ୍ଟ ଅତିଥିମାନଙ୍କ ମଧ୍ୟରେ ଉପସ୍ଥିତ ଥିଲେ ସ୍ୱୟଂ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଓ ସାଂସ୍କୃତିକ ବ୍ୟାପାର ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର । ଏମାନଙ୍କ ବ୍ୟତୀତ ବହୁ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ମଧ୍ୟ ଉପସ୍ଥିତ ଥିଲେ । ସର୍ବୋପରି ଉଲ୍ଲେଖଯୋଗ୍ୟ ହେଲା ଆମ ଓଡ଼ିଶାର ବହୁ ବିଶିଷ୍ଟ ବୟୋଜ୍ୟେଷ୍ଠ ସୁରଶିଳ୍ପୀ, ନାଟ୍ୟକାର, ଅଭିନେତା, ଅଭିନେତ୍ରୀ, କଳାକାର ଓ ସାହିତ୍ୟିକ ବୃନ୍ଦ ସେଠାରେ ଉପସ୍ଥିତ ରହି ରବୀନ୍ଦ୍ର ମଣ୍ଡପର ପରିବେଶକୁ ରୂପ ଓ ଗରୋଶୀର୍ଣ୍ଣିକରି



ବାଣୀକଣ୍ଠ ଶ୍ରୀ ନିମାଇଁ ଚରଣ ହରିଚନ୍ଦନଙ୍କ ହସ୍ତରେ ମାସିକ ବୃତ୍ତି ଅର୍ପଣ କରୁଛନ୍ତି ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ।

ଦେଇଥିଲେ । ପ୍ରସିଦ୍ଧ ଔପନ୍ୟାସିକ ଶ୍ରୀ ରାମପ୍ରସାଦ ସିଂହ, ପ୍ରଖ୍ୟାତ ହାସ୍ୟରସସ୍ରଷ୍ଟା ଶ୍ରୀ ଫତୁରାନନ୍ଦ, ଉତ୍କୃଷ୍ଟ କଣ୍ଠଶିଳ୍ପୀ ଶ୍ରୀ ନିମାଇଁ ହରିଚନ୍ଦନ, ପ୍ରଖ୍ୟାତ ଅଭିନେତା ମାଷ୍ଟର ମଣିଆ, ଅଭିନେତ୍ରୀ ଭୂଲଚନ୍ଦ୍ର ମାତ୍ରୁସ୍ୱୀ ଶ୍ରୀମତୀ ଲକ୍ଷ୍ମୀ ଦେବୀ ଓ ଶ୍ରୀମତୀ ରାଧାରାଣୀ ଦେବୀ, ବିଶିଷ୍ଟ ତବଲା ଶିଳ୍ପୀ ଶ୍ରୀ ଷେଣ-ମୋହନ କର, ଗୋଟିପୁଅ ନାଚର ଗୁରୁ ଶ୍ରୀ ଦୀନବନ୍ଧୁ ବେହେରା ଓ ସଙ୍ଗୀତଜ୍ଞ ଶ୍ରୀ ତାରିଣୀ ଚରଣ ପାଣି—ଛାୟାନୃତ୍ୟ ଶିଳ୍ପୀ ଶ୍ରୀ ହରିହର ବେହେରା ପ୍ରମୁଖ କଳାକାରମାନଙ୍କୁ ଏକତ୍ର ସମାବେଶ ଦେଖି

ଦର୍ଶକମାନଙ୍କ ମଧ୍ୟରେ ଆନନ୍ଦ ଓ କୃତଜ୍ଞତାର ହାଲହୋଲି ପଡ଼ି ଯାଇଥିଲା । ଗ୍ରାମୋଫୋନ୍ କମ୍ପାନୀ ଅଫ୍ ଇଣ୍ଡିଆର ମାନେଜିଂ ଡିରେକ୍ଟର ଶ୍ରୀ ଅନିଲ ସୁଦ, ଡିରେକ୍ଟର ବୋର୍ଡର ସଭ୍ୟବୃନ୍ଦ ଶ୍ରୀ ବିମାନ ଘୋଷ, ଶ୍ରୀ ବସୁ, ଶ୍ରୀ ସରକାର ଓ ଶ୍ରୀ ଦୁବେ ମଧ୍ୟ ସେମାନଙ୍କ ଉପସ୍ଥିତି ଦ୍ୱାରା ପରିବେଶଟିକୁ ଅଧିକ ମୂଲ୍ୟ ଏବଂ ନିବିଡ଼ କରି ଦେଇଥିଲେ ।

ସେ ସନ୍ଧ୍ୟାର ଉଦ୍ଦେଶ୍ୟ ଥିଲା ସେତିକି ଛନ୍ଦୋମୟ ତଦ୍ରୂପ ମହନୀୟ ମଧ୍ୟ । ଓଡ଼ିଶାର ବରିଷ୍ଠ କଳାକାର ବୃନ୍ଦ ଯେଉଁମାନେ ଦୀର୍ଘ କାଳରେ ସାହାବିରସାଧନ ହୋଇ ଅର୍ଥାଭାବ ଓ ଅନାଟନରେ ଘୋର ଦୁଃଖରେ ଜୀବନ ବିତାଉଛନ୍ତି ସେମାନଙ୍କ ସେହି ଦୟନୀୟ ପରିସ୍ଥିତିରୁ ଉଦ୍ଧାର କରି ସରକାରୀ ସ୍ତରରେ ସେମାନଙ୍କୁ ରାଜ୍ୟବାସୀଙ୍କ କୃତଜ୍ଞତାର ନିଦର୍ଶନ ସ୍ୱରୂପ ପ୍ରତିମାସରେ ଅର୍ଥିକ ସାହାଯ୍ୟ ଦେବାକୁ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ବହୁଦିନରୁ ଚିନ୍ତା କରି ଆସୁଥିଲେ । ସେଦିନ ପବିତ୍ର ଜନ୍ମାଷ୍ଟମୀର ସଂଧ୍ୟାରେ ମୁଖ୍ୟମନ୍ତ୍ରୀ ଅନ୍ତତଃ ପୂର୍ବୋକ୍ତ ଦଶଜଣ ବୟୋଜ୍ୟେଷ୍ଠ କଳାକାରଙ୍କୁ ମାସିକ କିସ୍ତିରେ ସରକାରୀ ବୃତ୍ତି ଏକଶହ ଟଙ୍କା ଅର୍ପଣ କରିଥିଲେ । ଏହି କଥାଟି ଘୋଷଣା



ମୁଖ୍ୟମନ୍ତ୍ରୀ ସୁନାମଧନ୍ୟା ମଞ୍ଚ ଅଭିନେତ୍ରୀ ଶ୍ରୀମତୀ ରାଧାରାଣୀ ଓ ଶ୍ରୀମତୀ ଲକ୍ଷ୍ମୀ ଦେବୀଙ୍କୁ
ମାସିକ ବୃତ୍ତି ଅର୍ପଣ କରୁଛନ୍ତି ।

ପରେ ପରେ ମୁଖ୍ୟମନ୍ତ୍ରୀ ସ୍ୱୟଂ ରଙ୍ଗମଞ୍ଚର ତଳକୁ ଓହ୍ଲାଇ ଆସି ବୃଦ୍ଧ କଳାକାରଙ୍କୁ ବିନୀତ ପ୍ରଣାମପୂର୍ବକ ଏହି ସରକାରୀ ବୃତ୍ତି ଅର୍ପଣ କରିଥିଲେ । ଏ ଦୃଶ୍ୟଟି ଦର୍ଶକମାନଙ୍କ ହୃଦୟକୁ ବିଚଳିତ କରିଦେଇଥିଲା । ଘନଘନ କରତାଳି ଓ ସାଧୁବାଦ ଭିତରେ ବହୁ ଶିଳ୍ପୀ ଏହି କରୁଣାବିଗଳିତ ହୃଦୟା ମୁଖ୍ୟମନ୍ତ୍ରୀଙ୍କୁ ଅନ୍ତରର ଅଶ୍ରୁଳ କୃତଜ୍ଞତା ଜଣାଇଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ କହିଲେ ଯେ

ଗୋଟିଏ ରାଜ୍ୟ ତାର କଳାକାରମାନଙ୍କୁ ଯେପର୍ଯ୍ୟନ୍ତ ଯଥେଷ୍ଟ ସମ୍ମାନ, ଆଦର ଓ ଅର୍ଥିକ ନିରାପତ୍ତା ନଦେଇଛି, ସେପର୍ଯ୍ୟନ୍ତ ସେ ରାଜ୍ୟର ସାଂସ୍କୃତିକ ଚେତନା ଆଦୌ ଉନ୍ନତ ହୋଇନାହିଁ

ଭୋଲି ଭୁଲିବାକୁ ହେବ । ସାହିତ୍ୟ, ସଂଗୀତ, କଳା ଓ ସଂସ୍କୃତି କ୍ଷେତ୍ରରେ ଯେଉଁମାନେ ସାଧନା କରୁଛନ୍ତି ସେମାନେ ଗୋଟିଏ ଜାତିର ଅସ୍ମିତାକୁହିଁ ବଞ୍ଚାଉଛନ୍ତି । ଆମେ ସେମାନଙ୍କୁ ଅଳ୍ପ ଯେଉଁ ଆର୍ଥିକ ବୃତ୍ତି ଦେଲୁ ତାହା ଅତି ସାମାନ୍ୟ । ମାତ୍ର ସେମାନଙ୍କ ପ୍ରତି ଆମ ଅନ୍ତରରେ ଯଥେଷ୍ଟ ସମ୍ମାନ ଓ କୃତଜ୍ଞତାବୋଧ ରହିଛି ଓ ରହିଥିବ ।

ମୁଖ୍ୟମନ୍ତ୍ରୀଙ୍କ ଭାଷଣ ପରେ ଓ ବୃତ୍ତିଦାନ କାର୍ଯ୍ୟ ସମାପ୍ତ ହେବାପରେ ବାଣୀକଣ୍ଠ ନିମାଇ ହରିଚନ୍ଦନ ନିଜର ମେଘମନ୍ଦ୍ର କଣ୍ଠରେ ଜଗନ୍ନାଥ ବନ୍ଦନା ଗାନ କରିଥିଲେ । ମଧୁକଣ୍ଠ ଶ୍ରୀ ବାଳକୃଷ୍ଣ ଦାସ ମଧ୍ୟ କେତୋଟି ପ୍ରାଚୀନ ସଂଗୀତ ଓ ଭଜନ ଗାନ କରିଥିଲେ । ରବୀନ୍ଦ୍ର ମଣ୍ଡପ ଭିତରେ ଏକ ଗୀତମୟ ମାଦକତାର ମଧୁ ମୂର୍ଚ୍ଛନା ଖେଳି ଯାଇଥିଲା । ସମସ୍ତଙ୍କ ହୃଦୟ ଭକ୍ତି, କୃତଜ୍ଞତା ଓ ପ୍ରୀତିଭାବରେ ଉଦ୍‌ବେଳିତ ହୋଇ ଉଠିଥିଲା । ବର୍ଷୀୟାନ ସଂଗୀତଜ୍ଞ ବାଳକୃଷ୍ଣ ଦାସ ଆବେଗ କମ୍ପିତ ହସ୍ତରେ ଏକମୁଠି ମହାପ୍ରସାଦ ଧରି ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ଆଗେଇ ଯାଇଥିଲେ ଏବଂ ତାଙ୍କ ହାତରେ



ପ୍ରଖ୍ୟାତ କଣ୍ଠଶିଳ୍ପୀ ଶ୍ରୀ ବାଳକୃଷ୍ଣ ଦାସ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କ ହସ୍ତରେ ମହାପ୍ରସାଦ ଦେଇ ଚିରବନ୍ଧୁତ୍ୱ କାମନା କରୁଛନ୍ତି ।

ମହାପ୍ରସାଦ ଦେଇ ତାଙ୍କର ଦୁଇ ହାତକୁ ମୁଠାଇ ଧରି ହାସ୍ୟାଶ୍ରୁ ଗଦ୍‌ଗଦ୍ କଣ୍ଠରେ କହିଲେ— ଆପଣ ଆଜିଠାରୁ ଆମ ଶିଳ୍ପୀକୁଳର ମହାପ୍ରସାଦ ବନ୍ଧୁ ହୋଇ ରହିଲେ ଚିରକାଳ ପାଇଁ ।

ଘନଘନ କରତାଳିରେ ଶ୍ରୋତୃବର୍ଗ ଏହି ମହାନ୍ ପ୍ରୀତିପଦ ଉଦ୍ଦେଶ୍ୟ ପଦକ୍ଷେପକୁ ସମର୍ଥନ ଓ ସ୍ୱାଗତ ଜଣାଇଥିଲେ । ଆର୍ଥିକ ଅନାଟନ ଓ ଦୁଃସ୍ଥିତିରେ ପଡ଼ିଥିବା ଓଡ଼ିଶାର କଳାକାରମାନଙ୍କ ପକ୍ଷରେ ଓଡ଼ିଶା ସରକାରଙ୍କର ଏହି ନିୟମିତ ସାହାଯ୍ୟ ବ୍ୟବସ୍ଥା ଯେ ପରମ ଆଶୀର୍ବାଦ ସ୍ୱରୂପ ହେଲା ଏହା କହିବା ବାହୁଲ୍ୟ ମାତ୍ର !

# ୪୬ଟି ପ୍ରାଚୀନ ସଂଗୀତର ନୂତନ ରେକର୍ଡ

ପେନ୍‌ସନ୍ ଅର୍ପଣ ସଙ୍ଗେ ସଙ୍ଗେ ରାଜ୍ୟସରକାରଙ୍କ ଉଦ୍ୟମରେ ଗ୍ରାମୋଫୋନ୍ କମ୍ପାନୀ ଅଫ୍ ଇଣ୍ଡିଆର ସହଯୋଗରେ ପ୍ରସ୍ତୁତ କେତୋଟି ଓଡ଼ିଆ ଭଜନର ଲଂ ପ୍ଲେଇଙ୍ଗ୍ ରେକର୍ଡ ମୁଖ୍ୟମନ୍ତ୍ରୀ ଉନ୍ମୋଚନ କରିଥିଲେ । ମୁଖ୍ୟମନ୍ତ୍ରୀ ଗ୍ରାମୋଫୋନ୍ ସେଟ୍‌ର ସୁଇଚ୍ ଟିପିବା ପରେ ପରେ କେତେଟି ଜଗନ୍ନାଥ ଜଣାଣ ବାଜି ଉଠିଥିଲା । କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଭୀମଭୋଇ, ସାଲବେଗ, ବନମାଳୀ ଓ ଗାଣଆଭିକ ପ୍ରମୁଖ ଓଡ଼ିଶାର ଅମର ଭକ୍ତକବିମାନଙ୍କ ଲିଖିତ ଏହି ଭଜନଗୁଡ଼ିକ ଗାନ କରିଥିଲେ ସର୍ବଶ୍ରୀ ଭିକାରୀ ଚରଣ ବଳ, ରଘୁନାଥ ପାଣିଗ୍ରାହୀ, ପ୍ରଣବ କିଶୋର ପଟ୍ଟନାୟକ, ବାଳକୃଷ୍ଣ ଦାସ, ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲ କର, ସିକନ୍ଦର ଆଲମ, ଭରତ ପ୍ରତିହାରୀ, ଭୁବନେଶ୍ୱରୀ ମିଶ୍ର, ପଦ୍ମାଲୟା ଗଗବତ୍ରୁ ଓ ଶ୍ୟାମାମଣି ଦେବୀ ପ୍ରମୁଖ ଆମର ସୁପ୍ରସିଦ୍ଧ କଣ୍ଠଶିଳ୍ପୀଗଣ । ଏହି ରେକର୍ଡଗୁଡ଼ିକ ଗୋଟିକ ପରେ ଗୋଟିଏ ବାଜି ଉଠିବା ସଙ୍ଗେ ସଙ୍ଗେ ବିଭିନ୍ନ କଣ୍ଠର ଉଜ୍ଜ୍ୱଳ ଉଦାତ୍ତ ସ୍ୱର ଲହରୀରେ ଭଗବତ ଚେତନା ଉଦ୍‌ବେଳିତ ହୋଇଉଠିଥିଲା । ଶ୍ରୋତାମାନେ ଅପୂର୍ବ ଆଧ୍ୟାତ୍ମ-ମୂଳକ ଅନୁଭବ କରିଥିଲେ ।

ଏହି ଭଜନଗୁଡ଼ିକ ସମେତ ଗ୍ରାମୋଫୋନ୍ କମ୍ପାନୀ ଅଫ୍ ଇଣ୍ଡିଆ ରାଜ୍ୟ ସରକାରଙ୍କ ଉଦ୍ୟମରେ ସର୍ବମୋଟ ଚଉରାଳିଶଟି ପ୍ରାଚୀନ ଓଡ଼ିଆ ସଙ୍ଗୀତ ରେକର୍ଡ କରିଛନ୍ତି । ସେ ସ୍ଥଳରେ ସବୁଗୁଡ଼ିକ ପ୍ଲେ କରାଯାଇଥିଲା ଓ ଶ୍ରୋତୃବର୍ଗ ସେଗୁଡ଼ିକୁ ପରମ ଆହ୍ଲାଦରେ ଉପଭୋଗ କରିଥିଲେ । ରାଜ୍ୟ ସରକାରଙ୍କର ଏହି ଅଭିନବ ଉଦ୍ୟମଟିକୁ ପ୍ରଶଂସା କରିବାରେ ସମସ୍ତଙ୍କ କଣ୍ଠ ଉଚ୍ଛ୍ୱସିତ ହୋଇ ଉଠିଥିଲା । ଏହି ଅମୂଲ୍ୟ ପ୍ରାଚୀନ ଭଜନ ଓ ସଙ୍ଗୀତଗୁଡ଼ିକ ଓଡ଼ିଶାର ଅମୂଲ୍ୟ ସମ୍ପଦ । ଏଗୁଡ଼ିକର ନିଜସ୍ୱ ସ୍ୱର ଓ ଭାବ ବିଭବ ରହିଛି—ରହିଛି ଏକ ସ୍ୱତନ୍ତ୍ର ଅସାଧାରଣ ଆବେଦନ । ମାତ୍ର ଏଗୁଡ଼ିକର ସ୍ୱରସଂଗତ ସଂରକ୍ଷଣ ପ୍ରତି ଏପର୍ଯ୍ୟନ୍ତ କେହି ଦୃଷ୍ଟି ଦେଇନଥିଲେ । ଫଳରେ ଆମର ରେକର୍ଡ ବଜାରରେ କେବଳ କେତେକ ଲଘୁ ସିନେମା ସଂଗୀତ ବା ହାଲୁକା ଆଧୁନିକ ସଂଗୀତହିଁ ପ୍ରସାର ଲାଭ କରିଥିଲା । ଏହି ୪୬ ଟି ସୁନିର୍ବାଚିତ ପ୍ରାଚୀନ ସଂଗୀତ ( ଭଜନ ଓ ଓଡ଼ିଶୀ ସମେତ ) ବର୍ତ୍ତମାନ ଓଡ଼ିଶାର ସୁଦୂରପଲ୍ଲୀଠାରୁ ଆରମ୍ଭ କରି ସହର ବଜାର ସର୍ବତ୍ର ନିଶ୍ଚୟ ସମାଦୃତ ହେବ । ସେ ଦିନ ରବୀନ୍ଦ୍ର ମଣ୍ଡପରେ ସମବେତ ବହୁବିଧ ରୁଚିସଂପନ୍ନ ଶ୍ରୋତୃବୃନ୍ଦଙ୍କ ଆଦରଣୀୟତାରୁ ଏଗୁଡ଼ିକର ବଳିଷ୍ଠ ଗଭୀର ପ୍ରଭାବ ବେଶ୍ ଅନୁମେୟ । ଏହି ସମସ୍ତ ସଙ୍ଗୀତର ସ୍ୱର ଯୋଜନା ଓ ନିର୍ଦ୍ଦେଶନାର ଦାୟିତ୍ୱ ନେଇଥିଲେ ପ୍ରଖ୍ୟାତ ସଂଗୀତଜ୍ଞ ଶ୍ରୀ ବାଳକୃଷ୍ଣ ଦାସ ଏବଂ ପ୍ରାଚୀନ କବିମାନଙ୍କର ସହସ୍ରାଧିକ ସଂଗୀତ ଭିତରୁ ଏହି ଚଉରାଳିଶଟି ସଂଗୀତ ନିର୍ବାଚନ କରିଥିଲେ ଓଡ଼ିଶାର ସୁଖ୍ୟାତ କବି ଓ ପ୍ରଶାସକ ଶ୍ରୀ ରମାକାନ୍ତ ରଥ, ଆଇ. ଏ. ଏସ. । ଉପସ୍ଥିତ ଶ୍ରୋତୃବର୍ଗ ଏଥିଲାଗି ଶ୍ରୀଯୁକ୍ତ ରଥ ଓ ସାଂସ୍କୃତିକ ବିଭାଗର ସେକ୍ରେଟାରୀ ଶ୍ରୀ ଅର୍ଦ୍ଧେନ୍ଦୁ ନାରାୟଣ ଷଡ଼ଙ୍ଗୀ, ଆଇ. ଏ. ଏସ୍. ଙ୍କୁ ଯଥେଷ୍ଟ ଧନ୍ୟବାଦ ଅର୍ପଣ କରିଥିଲେ ।

## ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ

ଉତ୍ସବ ଆରମ୍ଭରେ ସଂଗୀତ ମହାବିଦ୍ୟାଳୟର ପଣ୍ଡିତ "କଦାଚିତ୍ କାଳିନ୍ଦୀତଟ ବିପିନେ ସଂଗୀତ ତରଳ" ଜଗନ୍ନାଥ ସ୍ତୁତିଟି ଗାନ କରିଥିଲେ ଶ୍ରୀ ରଘୁନାଥ ପ୍ରଧାନ । ତତ୍ପରେ ଶ୍ରୀଯୁକ୍ତ ଷଡ଼ଙ୍ଗୀ ଉତ୍ସବଟିର ଆଭିମୁଖ୍ୟ ବର୍ଣ୍ଣନା କରିବା ପରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ରେକର୍ଡଗୁଡ଼ିକ ଉନ୍ମୋଚନ କରିବା ପୂର୍ବରୁ ମଞ୍ଚ ଉପରେ ପୁଷ୍ପମାଲ୍ୟ ଶୋଭିତ ଶ୍ରୀ ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣତି ଜଣାଇ କହିଲେ—

ଆଜି ଜନ୍ମାଷ୍ଟମୀଭଳି ପବିତ୍ର ଦିବସରେ ସ୍ୱୟଂ ଶ୍ରୀ ଜଗନ୍ନାଥଙ୍କ ଉପସ୍ଥିତି ଆମେ ଏଠାରେ ଅନୁଭବ କରୁଛୁ । ଶ୍ରୀ ଜଗନ୍ନାଥ ହିନ୍ଦୁ ଜଗତର ସର୍ବୋପରି ଆରାଧ୍ୟ ଦେବତା ସତ୍ୟ, ମାତ୍ର ଓଡ଼ିଶାର ଐତିହ୍ୟ, ସାହିତ୍ୟ, ସଂସ୍କୃତି ଓ ଆଧ୍ୟାତ୍ମ ଚେତନାର ମୂଳ ଆଧାର ରୂପେ ତିନିକୋଟି ଓଡ଼ିଆଙ୍କର ସେ ହୃଦୟେଶ୍ୱର । ଓଡ଼ିଶାପ୍ରତି ତାଙ୍କର କରୁଣା ଓ ଆଶୀର୍ବାଦ ଚିରନ୍ତନ ରହିଛି । ସେହି ମହାମହିମ-

ପୁରୁଷୋତ୍ତମ କୃଷ୍ଣ ଓ ପତିତ ମଣିଷ ଲାଗି ତାଙ୍କର ଭକ୍ତ ସଂସ୍ଥାପକରୂ ଓହ୍ଲାଇ ଆସନ୍ତି । ସାଧାରଣ ଓ ଅସାଧାରଣ ସବୁ ମଣିଷଙ୍କ ହାତରେ ଧରାଇ ଦିଅନ୍ତି ତାଙ୍କ ନନ୍ଦିଘୋଷ ରଥର ଡୋରି । ଭକ୍ତ ଓ ଭଗବାନର ଏ ଅନ୍ତରଙ୍ଗ ସଂପର୍କ ଓଡ଼ିଶା ବ୍ୟତୀତ ଅନ୍ୟ କେଉଁଠି ଏଭଳି ଦେଖାଯାଏ ନାହିଁ । ସେଥିପାଇଁ ଉତ୍କଳର ପ୍ରାତଃସ୍ମରଣୀୟ ନେତା ଉତ୍କଳମଣି ଗୋପବନ୍ଧୁ ଗାଇ ଉଠିଥିଲେ—

ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ଦେବା ନିଜେ ନାରାୟଣ ।

ଆମ୍ଭେମାନେ ଯଦି ଆମର ହୃଦୟକୁ ପବିତ୍ର ଓ ମଙ୍ଗଳ ଇଚ୍ଛାରେ ପରିପୂର୍ଣ୍ଣ ରଖିବା, ଆମ୍ଭେମାନେ ଯଦି ଏକ ମହତ୍ତର ଜୀବନ ଓ ସମାଜ ଲାଗି ଆମ ଅନ୍ତରରେ ଅଭୀପ୍ସା ଜାଗ୍ରତ ରଖିବା ତେବେ ଏହି ମହାନ୍ ଜାତିକୁ ତା'ର ସତ୍‌ଗତି ପଥରେ କରୁଣାମୟ ନେତୃତ୍ୱ ଦେବେ ସ୍ୱୟଂ ଶ୍ରୀ ଜଗନ୍ନାଥ— ଏଥିରେ ସନ୍ଦେହ ନାହିଁ ।

ତା'ପରେ ଶ୍ରୀମତୀ ଶତପଥୀ ଜନ୍ମାଷ୍ଟମୀ ଦିବସଟି ଉପରେ ସମସ୍ତଙ୍କର ମନଯୋଗ ଆକର୍ଷଣ କରିଥିଲେ । ପ୍ରଶାନ୍ତ ଓ ଗଭୀର କଣ୍ଠରେ ସେ କହିଲେ ଯେ—

ଆଜିର ଏହି ଉତ୍ସବଟି ପବିତ୍ର ଜନ୍ମାଷ୍ଟମୀ ଦିନ ଅନୁଷ୍ଠିତ ହେବା ନିଶ୍ଚୟ ତାତ୍ପର୍ଯ୍ୟପୂର୍ଣ୍ଣ । ଏହିଭଳି ଏକ ପବିତ୍ର ତିଥିରେ ଆଜକୁ ହଜାର ହଜାର ବର୍ଷତଳେ ଏ ଦେଶରେ ଜଣେ ମହାନ୍ ପୁରୁଷୋତ୍ତମ ଜନ୍ମଗ୍ରହଣ କରିଥିଲେ । ସେ ପରିପୂର୍ଣ୍ଣ ଭଗବତ ମହିମା ଓ ବିଭୂତିର ଅଧିକାରୀ ଥିଲେ । ସମାଜକୁ ଦାନବ ଓ ପିଶାଚମାନଙ୍କ ହାତରୁ ରକ୍ଷାକରି ମନୁଷ୍ୟର ହୃଦୟରେ ପ୍ରେମ, ସତ୍ୟ, ସୌନ୍ଦର୍ଯ୍ୟ ଓ ଆଲୋକର ଚେତନା ସୃଷ୍ଟିକରିବା ତାଙ୍କ ଅବତରଣର ଲକ୍ଷ୍ୟ ଥିଲା । ସେ ଅତ୍ୟାଚାର, ନିପୀଡ଼ନ, ଅଜ୍ଞାନ ଓ କୁସଂସ୍କାରର ଅନ୍ଧକାର ଭିତରୁ ମନୁଷ୍ୟର ଓ ସମାଜର ଆତ୍ମାକୁ ମୁକ୍ତିଦେଇ, ମନୁଷ୍ୟ ଆଗରେ ଦିବ୍ୟଜୀବନର ପଥ ଦର୍ଶାଇ ଦେଇଥିଲେ । ଆଜପର୍ଯ୍ୟନ୍ତ ମନୁଷ୍ୟ ବ୍ୟକ୍ତିଗତ ଭାବେ ଓ ସାମାଜିକ ଭାବେ ସେ ପଥକୁ ସଂପୂର୍ଣ୍ଣ ଆଦରି ନେଇ ନାହିଁ ସତ୍ୟ—ମାତ୍ର ତଥାପି ମନୁଷ୍ୟ ସମାଜ ଆଜପର୍ଯ୍ୟନ୍ତ ସେହି ମହାନ ଦିବ୍ୟପୁରୁଷଙ୍କ ଉଦ୍ଦେଶ୍ୟରେ ଆପଣାର କୃତଜ୍ଞତା, ଭକ୍ତି ଓ ପ୍ରେମ ନିବେଦନ କରି ଆସୁଛି । ଆମର ରାଜନୀତି, ସମାଜନୀତି, ସାହିତ୍ୟ ଓ ସଂସ୍କୃତି ଯଦି ସେହି ଆଲୋକମୟ ଚେତନାର ଅନୁକୂଳ ନହୁଏ, ତେବେ ଆମର ସମସ୍ତ ଉଦ୍ୟମ ବ୍ୟର୍ଥ ଓ ମିଥ୍ୟା ହୋଇ ପ୍ରମାଣିତ ହେବ ।

ପରିଶେଷରେ ମୁଖ୍ୟମନ୍ତ୍ରୀ ଓଡ଼ିଶାର ଏହି ପ୍ରାଚୀନ ପୁନର୍ଜୀବିତ ସଂଗୀତଗୁଡ଼ିକର ରେକର୍ଡ ଉପରେ କହିଲେ—

ଆମେ ସାହିତ୍ୟ ଓ ସଙ୍ଗୀତନୃତ୍ୟାଦି କ୍ଷେତ୍ରରେ ନିଶ୍ଚୟ ଅଗ୍ରଗତି କରିଛୁ ଓ ଆମର କଳାକାରଗଣ ସେମାନଙ୍କର କଳାନୁରାଗ ଓ ସାଧନା ବଳରେ ସେଥିରେ ସ୍ୱକୀୟତା ଓ ନୂତନତା ସୃଷ୍ଟି କରିବେ ମାତ୍ର ଆମର ଐତିହାସିକ ଓ ଐତିହ୍ୟବାହୀ ଭାବରେ ଗୌରବମୟ ପରଂପରାକୁ ଆମେ ନିଶ୍ଚିନ୍ତ ଭାବେ ରକ୍ଷାକରି ପାରିବୁ । ଏ ଦିଗରେ ସରକାର ତ ନିଶ୍ଚୟ ସହାୟତା କରିବେ—ଆମର କୃତୀ କଳାକାର ଗଣ ମଧ୍ୟ ସେ ଦିଗରେ ଯଥେଷ୍ଟ ଗବେଷଣା କରିବା ଉଚିତ । ଆମର ଅପୂର୍ବ ସ୍ଥାପତ୍ୟ ଆମର ଅସଂଖ୍ୟ ମନ୍ଦିର ଗାତ୍ରରେ ପ୍ରସ୍ତର ଦେହରେ ଖୋଦିତ ହୋଇ ରହିଛି । କିନ୍ତୁ ଆମର ପ୍ରାଚୀନ ସଙ୍ଗୀତକୁ ଆମେ କପରି ଚିରନ୍ତନ ପାଇଁ ରକ୍ଷା କରି ପାରିବୁ? ପ୍ରାଚୀନ ସଂଗୀତର ସ୍ୱରଲିପିକୁ ଓ ମୌଳିକତାକୁ ନିଶ୍ଚୟ ରକ୍ଷା କରାଯିବ । ଏଥିଲାଗି ଆମେ ପ୍ରଥମଥର ପାଇଁ ଏହି କେତୋଟି ସଙ୍ଗୀତକୁ ରେକର୍ଡିଂ କରିଅଛୁ । ମାତ୍ର ଏହି ଉଦ୍ୟମ ନିଶ୍ଚୟ ଚାଲୁ ରହିବ । ମାତ୍ର ଉତ୍କୃଷ୍ଟ ସଙ୍ଗୀତକୁ ରେକର୍ଡିଂ କରିଅଛୁ ।

ମୁଖ୍ୟମନ୍ତ୍ରୀଙ୍କ ଭାଷଣପରେ ସାଂସ୍କୃତିକ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର ଉପସ୍ଥିତ ଶିଳ୍ପୀ, କର୍ମକର୍ତ୍ତା ଓ ସମବେତ ଶ୍ରୋତୃବର୍ଗଙ୍କୁ ଧନ୍ୟବାଦ ଅର୍ପଣକରି କହିଥିଲେ—

ଆମ୍ଭେମାନେ ଓଡ଼ିଶାର ସାଂସ୍କୃତିକ ଚେତନାକୁ ଅଗ୍ରସର ଏବଂ ଉନ୍ନତ କରିବା ଦିଗରେ ଯେଉଁ ସବୁ କାର୍ଯ୍ୟପନ୍ଥା ଗ୍ରହଣ କରିଛୁ—ଆଜିର କାର୍ଯ୍ୟକ୍ରମ ତା ଭିତରୁ ଗୋଟିଏ ମାତ୍ର । ଓଡ଼ିଶାର ଶତ ଶତ

କଳାକର ଦାରିଦ୍ର୍ୟ ଓ ରୋଗଶୋକରେ ନିର୍ଯ୍ୟାତନା ଭୋଗ କରୁଥିଲେ ବେଳେ ଆମେ ଯଦି ସେମାନଙ୍କୁ ସାହାଯ୍ୟ ଓ ସମ୍ମାନ ନକରୁ, ତେବେ ଆମେ ଗୋଟିଏ କୃତଘ୍ନ ଜାତିରୂପେ ପରିଗଣିତ ହେବୁ । ଆମର ପ୍ରଥମ କର୍ତ୍ତବ୍ୟ ହେଲା—ଯୁଗଯୁଗଧରି ଯେଉଁ କଳାର ସୁମହତ ପରମ୍ପରା ତିଆରି ହୋଇଛି, ତାକୁ ସର୍ବତୋଭାବେ ରକ୍ଷା କରିବା ଓ ଆମର କଳାକାରମାନଙ୍କୁ ଯଥୋଚିତ ସମ୍ମାନ ଓ ସାହାଯ୍ୟ ସୁଯୋଗ ପ୍ରଦାନ କରିବା ।

ମୋଟ ଉପରେ ସେଦିନର ସାନ୍ଧ୍ୟ ଉତ୍ସବଟି ଯେପରି ହୃଦ୍ୟ ଓ ପବିତ୍ର ଭାବରେ ଅନୁଷ୍ଠିତ ହୋଇଥିଲା ସେଥିଲାଗି ଆମ୍ଭେମାନେ ସରକାର ଓ ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ସାଧୁବାଦ ଅର୍ପଣ କରୁଛୁ । ଉତ୍ସବ ଶେଷରେ ଓଡ଼ିଶାର ବିଶିଷ୍ଟ କଥାକାର ଓ ପ୍ରଶାସକ ଶ୍ରୀ ବିଭୂତି ଭୂଷଣ ତ୍ରିପାଠୀ, ଆଇ. ଏ. ଏସ୍. କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ସଂଗେ ଏ ସଂପର୍କରେ କଥାବାର୍ତ୍ତା ହେଉ ହେଉ ଯାହା ମନ୍ତବ୍ୟ ଦେଲେ ତାହା ସମସ୍ତଙ୍କର ନିଶ୍ଚୟ ପ୍ରଣିଧାନଯୋଗ୍ୟ ।

ଶ୍ରୀଯୁକ୍ତ ତ୍ରିପାଠୀ କହିଲେ ଯେ ଆଜିଠାରୁ ଓଡ଼ିଶାର ସର୍ବ ସ୍ଥାନରେ, ପୂଜା ପାର୍ବଣରେ, ଉତ୍ସବ ବ୍ୟସନରେ ଡ୍ରଇଁରୁମ୍‌ରେ ଭଲ ଓଡ଼ିଆ ସଂଗୀତର ରେକର୍ଡ ବଜାଇ ଉପଭୋଗ କରିବାକୁ ସୁଯୋଗ ଆସିଗଲା । ଏହି ବୟାଳିଶିଟି ସୁନିର୍ବାଚିତ ଓଡ଼ିଆ ଭଜନ ଓ ସଂଗୀତର ରେକର୍ଡଗୁଡ଼ିକ ଏତେ ସୁଶ୍ରାବ୍ୟ ଓ ମନୋହର ହୋଇଛି ଯେ ଏ ଗୁଡ଼ିକ ଆମର ସାଂସ୍କୃତିକ ସଂଗୀତ ରୁଚିର ଯେଉଁ ଲଘୁଗତି ହୋଇଛି ତାକୁ ଉନ୍ନତ କରିବାରେ ନିଶ୍ଚୟ ସମର୍ଥ ହେବ । ଏଗୁଡ଼ିକ ବୟସ ଓ ଶିକ୍ଷା ନିର୍ବିଶେଷରେ ସମସ୍ତଙ୍କର ଆଦରଣୀୟ ହେବଇହେବ ।

ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗର ସୁନାମଧନ୍ୟ ଅଧ୍ୟାପକ-ସୁସମାଲୋଚକ ଶ୍ରୀଯୁକ୍ତ ଯତୀନ୍ଦ୍ର ମୋହନ ମହାନ୍ତି ମତ ଦେଲେ—ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଏତେ ଦିନପରେ ଖୁବ୍ ଗୋଟାଏ ମହତ କାର୍ଯ୍ୟକଲେ । ଦୁଃସ୍ଥ କଳାକାରମାନଙ୍କ ପାଇଁ ଏହି ମାସିକ ବୃତ୍ତି ବ୍ୟବସ୍ଥା ସାଙ୍ଗକୁ ଏହି ସବୁ ସୁନ୍ଦର ସଂଗୀତଗୁଡ଼ିକର ରେକର୍ଡ଼ୀକରଣ ନିଶ୍ଚୟ ଏ ବର୍ଷର ଗୋଟିଏ ଉଲ୍ଲେଖନୀୟ କୃତି । ଆମ ଯୁବସମାଜର ସଂଗୀତ-ରୁଚିକୁ ସମୃଦ୍ଧ କରିବା ଦିଗରେ ଏହି ରେକର୍ଡ-ଗୁଡ଼ିକ ନିଶ୍ଚୟ ସହାୟତା କରିବ ।

ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ କୃତି ଛାତ୍ର କହିଲେ—ଓଡ଼ିଆ ଭାଷାରେ ଏତେ ସୁନ୍ଦର ସଂଗୀତମାନ ଥିଲା—ପୁଣି ସେଗୁଡ଼ିକ ଏତେ ଚମତ୍କାର ସୁର ବୈଚିତ୍ର୍ୟରେ ଗାନ କରାଯାଇପାରେ ଆମକୁ ଜଣାନଥିଲା । ଏ ଗୀତଗୁଡ଼ିକ ଶୁଣିଲାପରେ ଆଉ ଏ ସବୁ ଲାଇଟ୍ ମ୍ୟୁଜିକ୍ ( ଲଘୁ ସଂଗୀତ ) ଶୁଣିବାକୁ ଇଚ୍ଛା ହେବନାହିଁ ।

ରାଜଧାନୀର ଜଣେ ସୌଖୀନ ଅଭିନେତା କହିଲେ—ଦୁଃସ୍ଥ କଳାକାରମାନଙ୍କ ପାଇଁ ଏ ଯେଉଁ ମାସିକ ବୃତ୍ତି ସରକାର ମଞ୍ଜୁର କଲେ ଏଥିଲାଗି ଆମେ କଳାକାରମାନଙ୍କ ତରଫରୁ ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ଅଶେଷ କୃତଜ୍ଞତା ଜଣାଉଛୁ ।

ସେଦିନର ଉତ୍ସବ ସମାପନ ପରେ ରବୀନ୍ଦ୍ର ମଣ୍ଡପ ବାହାରେ ବହୁ ବ୍ୟକ୍ତି ପରସ୍ପର ମଧ୍ୟରେ କଥାବାର୍ତ୍ତା ଛଳରେ ଯେମିତି ସରକାରଙ୍କର ଏହି ଉଦ୍ୟମଟିକୁ ଅନ୍ତରର ସହିତ ସାଧୁବାଦ ଦେଲେ—ତାହା ନଦେଖିଲେ ନଶୁଣିଲେ ବିଶ୍ୱାସ କରିହେବନାହିଁ ।

[illegible]

[illegible]

ଶ୍ରୀ ରଘୁନାଥ ମିଶ୍ର

[illegible]

# ଆପଣଙ୍କର ଜୟହେଉ—
# ଓଡ଼ିଶାର ଶୁଭହେଉ

ଉପରର ଲେଖାଟି ଲେଖିଛନ୍ତି ଶ୍ରୀ ରଘୁନାଥ ମିଶ୍ର । କଲିକତା ଦମଦମ ଘାଟିରେ ଜଣେ ଓଡ଼ିଆ ଖଲାସୀ । ଗତ ତା ୨-୯-୧୯୭୬ ରେ ଆମର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଦିଲ୍ଲୀ ଯିବା ବାଟରେ ଦମ୍‌ଦମ୍‌ଠାରେ ଥିବା ବେଳେ ସେ ଏକଥା ଜାଣିପାରି ତାଙ୍କ ପାଖକୁ ଆସି ପ୍ରଣାମ କଲେ—ଆଉ କହିଲେ—

ଆଜ୍ଞା! ଆମ ଓଡ଼ିଶାର ଗରିବ ପିଲାଙ୍କ ପଢ଼ିବାପାଇଁ ଆପଣ କୁଆଡ଼େ ସବୁ ସ୍କୁଲ କଲେଜରେ ବହି ବ୍ୟାଙ୍କ୍ ଖୋଲିଛନ୍ତି ? ଆଉ ସେଥିପାଇଁ ସମସ୍ତଙ୍କ ସାହାଯ୍ୟ ମାଗୁଛନ୍ତି ।

ଶ୍ରୀମତୀ ଶତପଥୀ ଭଦ୍ରଲୋକଙ୍କ ମୁହଁକୁ ଚାହିଁଲେ—ସାଧାରଣ ଜଣେ ଖଲାସୀ—ଓଡ଼ିଶାଠାରୁ ବେଶ୍ ଦୂରରେ ଅଛନ୍ତି ! ଅଥଚ ନିଜ ରାଜ୍ୟ ସମ୍ପର୍କରେ ଇମିତି ଖବର ସବୁ ରଖିଛନ୍ତି । ତାଙ୍କର ବହି ବ୍ୟାଙ୍କ୍ ବିଷୟରେ ବା ଏତେ ଆଗ୍ରହ କାହିଁକି ?

ମୁଖ୍ୟମନ୍ତ୍ରୀଙ୍କ ମୁଣ୍ଡରେ ରାଜ୍ୟର ଗୁରୁଭାର ଚିନ୍ତା । ତେବେ ସେହି ମୁହୂର୍ତ୍ତରେ ତାଙ୍କର ମନ ଜନର ଏହି ପ୍ରବାସୀ ଭାଇଟିର ଆନ୍ତରିକତାରେ କମ୍ପିତ ଆର୍ଦ୍ର ଓ କୋମଳ ହୋଇ ଉଠିଲା । ତାଙ୍କର ଗମ୍ଭୀର ମୁଖ ମଣ୍ଡଳରେ ସ୍ୱଭାବ ସୁଲଭ ମଧୁର ହସ ଫୁଟି ଉଠିଲା । ସେ କହିଲେ—ହଁ, ଆମେ ଓଡ଼ିଶାର ପ୍ରାୟ ସବୁ ସ୍କୁଲ କଲେଜରେ ବହି ବ୍ୟାଙ୍କ୍ ଖୋଲି ଦେଲୁଣି । ଆପଣ ଏଥିରେ ଖୁବ୍ ଖୁସୀ—ନା' କଣ ?

ତା'ପରେ ଭଦ୍ରଲୋକ ଖୁବ୍ ବିନୀତ ଭାବେ ଏକ ଶହ ଟଙ୍କା ମୁଖ୍ୟମନ୍ତ୍ରୀଙ୍କ ଆଡ଼କୁ ବଢ଼ାଇ ଦେଲେ ।

ମୁଖ୍ୟମନ୍ତ୍ରୀ କହିଲେ—ଏ କଣ ?

ଖଲାସୀ ଭଦ୍ରଲୋକଙ୍କ ଆଖି ଛଳଛଳ ହୋଇଗଲା । ମାତ୍ର ଓଠରେ ହସ ଫୁଟାଇ ସେ କହିଲେ—

ନା! ଦୀନବନ୍ଧୁ ଶ୍ରୀ ଜଗନ୍ନାଥ ଆପଣଙ୍କୁ ଦୀର୍ଘଜୀବୀ କରନ୍ତୁ । ଆପଣଙ୍କ ଅମଳରେ ଓଡ଼ିଶାରେ ଗରିବ ଲୋକଙ୍କ ସ୍ୱର୍ଗ ଖୋଲିଗଲା । ଆମେ ସବୁ ଖବର ରଖିଛୁ । ଆମେ ଆପଣଙ୍କ ସେବାବ୍ରତ କାମରେ କ'ଣ ବା ସାହାଯ୍ୟ କରିପାରିବୁ, ତେବେ ଶ୍ରଦ୍ଧାର ପୁଷ୍ପାଞ୍ଜଳି ଏତିକ ଆମ ତରଫରୁ ସେହି ଉଦ୍ଦେଶ୍ୟରେ ଆପଣଙ୍କ ହାତରେ ଅର୍ପଣ କରୁଛୁ । ଆପଣଙ୍କର ଜୟ ହେଉ—ଓଡ଼ିଶାର ଶୁଭ ହେଉ ।

ଶ୍ରୀମତୀ ଶତପଥୀ ତାଙ୍କୁ ଧନ୍ୟବାଦ ଦେଇ ହସି ହସି ଟଙ୍କାତକ ଗ୍ରହଣ କଲେ । କିନ୍ତୁ ଏହି ସାମାନ୍ୟ ଘଟଣାରେ ତାଙ୍କ ଅନ୍ତର ଏକ ଅପୂର୍ବ ପ୍ରେରଣାରେ ପୂର୍ଣ୍ଣ ଉଠିଲା । ତାଙ୍କର ମନେହେଲା—ସବୁ ମଙ୍ଗଳ କାର୍ଯ୍ୟ ବା ଉଦ୍ୟମ ପଛରେ ମଙ୍ଗଳମୟ ଭଗବାନଙ୍କର ଆଶୀର୍ବାଦ ତ ନିଶ୍ଚୟ ରହିଛି । କିନ୍ତୁ ଆହୁରି ଆନନ୍ଦର ଓ ଆଶ୍ୱାସନାର କଥା ହେଉଛି—ଏହି ଶ୍ରୀ ରଘୁନାଥ ମିଶ୍ରଙ୍କ ଭଳି ମଣିଷମାନଙ୍କର ବି ହାର୍ଦ୍ଦିକ କଲ୍ୟାଣ ରହିଛି । କିମ୍ବା ନର ଓ ନାରାୟଣ ଉଭୟଙ୍କର ସମନ୍ୱୟ ବୋଧହୁଏ ଏହା !



# ଘଟଣା ପ୍ରବାହ

## ମଇ ୧୯୭୭

୧-୫-୭୭ ୧୯୭୭ ଜାନୁଆରୀ ପହିଲାରୁ ଓଡ଼ିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ନିଯୁକ୍ତ ଶିକ୍ଷକମାନଙ୍କ ଦରମାହାର ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନଙ୍କ ସୁପାରିଶ ହାରରେ ଦିଆଯିବାଲାଗି ରାଜ୍ୟ ସରକାରଙ୍କ ନିଷ୍ପତ୍ତି ।

୫-୫-୭୭ ସୁବର୍ଣ୍ଣରେଖା, ବୈତରଣୀ ଓ ମହାନଦୀ ଡେଲ୍‌ଟାକୁ ନେଇ ଗୋଟିଏ କମାଣ୍ଡ ଏରିଆ ଡେଭଲପମେଣ୍ଟ ଅଥରିଟି ସୃଷ୍ଟି କରିବାଲାଗି ରାଜ୍ୟ ମନ୍ତ୍ରୀ ପରିଷଦର ନିଷ୍ପତ୍ତି ।

୬-୫-୭୭ ସୁପ୍ରିମକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ କେ. ସୁବାରାଓଙ୍କ ପରଲୋକ ।

୭-୫-୭୭ ରାଜ୍ୟ ପୂର୍ତ୍ତ ମନ୍ତ୍ରୀ ଶ୍ରୀ ଲକ୍ଷ୍ମଣ ମଲ୍ଲିକ କଟକ ଜିଲ୍ଲା ବାରଡୋଲା ଗ୍ରାମ ନିକଟସ୍ଥ ହଂସୁଆ ନଦୀ ଉପରେ ନିର୍ମିତ ହେବାକୁ ଥିବା ପୋଲର ଭିତ୍ତି ସ୍ଥାପନ କଲେ ।

୧୧-୫-୭୭ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ କଟକ ସହର ବକ୍‌ସି ବଜାରରେ ସୁପର ମାର୍କେଟର ଶିଳାନ୍ୟାସ କଲେ ।

୧୫-୫-୭୭ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଫୁଲବାଣୀ ଜିଲ୍ଲାର ପିଲସାଲକି ଓ ଗଞ୍ଜାମ ଜିଲ୍ଲାର ବଡ଼ ମଧ୍ୟମ ଜଳସେଚନ ଯୋଜନାର ଭିତ୍ତି ସ୍ଥାପନ କଲେ ।

୧୭-୫-୭୭ ପୁରୀ ଜିଲ୍ଲା ଦଶପଲ୍ଲା ନିକଟବର୍ତ୍ତୀ ଓଡ଼ଗାଁ ଗ୍ରାମ ନିକଟରେ ୪ କୋଟି ୩୭ ଲକ୍ଷ ୭୨ ହଜାର ଟଙ୍କା ବ୍ୟୟରେ ନିର୍ମିତ ହେବାକୁ ଥିବା କୁଆଁରିଆ ମଧ୍ୟମ ଜଳସେଚନ ଯୋଜନାର ଭିତ୍ତି ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କଦ୍ୱାରା ସ୍ଥାପିତ ହେଲା ।

୨୧-୫-୭୭ ଆଠଗଡ଼ ନିକଟସ୍ଥ ପୁରୁଣା କଟକ-ସମ୍ବଲପୁର ରାସ୍ତାର ଲୁଣିଆ ନଦୀ ଉପରେ ୯ ଲକ୍ଷ ୪୧ ହଜାର ଟଙ୍କା ବ୍ୟୟରେ ନିର୍ମିତ ପୋଲ ପୂର୍ତ୍ତ ମନ୍ତ୍ରୀ ଶ୍ରୀ ଲକ୍ଷ୍ମଣ ମଲ୍ଲିକ ଉଦ୍‌ଘାଟନ କଲେ ।

ଭୂ-ସଂସ୍କାର ସଂକ୍ରାନ୍ତ ରାଜ୍ୟ ଓ କେନ୍ଦ୍ର ଆଇନ ସବୁକୁ ଅଦାଲତ ପରିସୀମା ବାହାରେ ରଖାଯିବା ଉଦ୍ଦେଶ୍ୟରେ ଲୋକସଭାରେ ଏକ ବିଲ ଆଗତ ହେଲା ।

୨୪-୫-୭୭ ହିନ୍ଦୁ ଛାଡ଼ପତ୍ର ଆଇନ (ସଂଶୋଧନ) ବିଲ ପାର୍ଲାମେଣ୍ଟରେ ଗୃହୀତ ହେଲା ।

୨୬-୫-୭୭ ବିଶିଷ୍ଟ ହୋମିଓପ୍ୟାଥିକ ଚିକିତ୍ସକ ପଦ୍ମଶ୍ରୀ ଅଭିନ୍ନ ରାଓଙ୍କ ପରଲୋକ ।

୨୯-୫-୭୭ ରାଜ୍ୟ ସେଚ ଓ ଶକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବିଦ୍ୟାଲୋଚନ ଶେଖର ଦେଓ ୬୦ ଲକ୍ଷ ଟଙ୍କା ବ୍ୟୟରେ କାର୍ଯ୍ୟକାରୀ ହେଉଥିବା ହେମଗିରି ଗ୍ରାମ୍ୟ ବିଦ୍ୟୁତ୍‌କରଣ ଯୋଜନା ଉଦ୍‌ଘାଟନ କଲେ ।

୩୦-୫-୭୭ ଓଡ଼ିଶା ରାଜ୍ୟପାଳ ଶ୍ରୀ ଶିବନାରାୟଣ ଶଙ୍କର ଭଞ୍ଜନଗରଠାରେ 'ଜୁଡ଼ିସିଆଲ ଭବନ' ର ଭିତ୍ତି ସ୍ଥାପନ କଲେ ।

## ଜୁନ ୧୯୭୭

୧-୬-୭୭ ୧୯୭୭ ଓଡ଼ିଶା ପ୍ରମୋଦ କର (ସଂଶୋଧନ) ଆଇନ ବଳବତ୍ତର ହେଲା ।

୨-୬-୭୭ 'ଘରିଆଲ' ଶ୍ରେଣୀର କୁମ୍ଭୀର ସଂରକ୍ଷଣ ଲାଗି ମହାନଦୀର ଟିକରପଡ଼ା ନିକଟ ସାତକୋଶିଆ ଗଣ୍ଡକୁ ୧୯୭୬ ମଇ ମାସ ୧୯ ତାରିଖରୁ 'ଅଭୟାରଣ୍ୟ' ଘୋଷଣା କରାଗଲା ।

୯-୬-୭୬ ୧୯୭୬ ଅପ୍ରେଲ ପହିଲାରୁ ରାଜ୍ୟ ସରକାର ପ୍ରାଥମିକ ଶିକ୍ଷକମାନଙ୍କ ପେନ୍‌ସନ୍ ହାର ବଢ଼ାଇଦେଲେ ।

୧୧-୬-୭୬ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ କୋରାପୁଟ ଜିଲ୍ଲାରେ ତେଇଶ କୋଟି ସତର ଲକ୍ଷ ଛଅସ୍ତରି ହଜାର ଟଙ୍କା ବ୍ୟୟରେ ନିର୍ମିତ ହେବାକୁ ଥିବା ଅପର କୋଲାବ ଜଳସେଚନ ଯୋଜନାର ଶୁଭ ଦେଲେ ।

୧୫-୬-୭୬ ପୁରୀ ଜିଲ୍ଲାର ସିଧାମୂଳାଠାରେ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ସୋମନାଥ ରଥ ଏକ ଆୟୁର୍ବେଦ ଚିକିତ୍ସାଳୟ ଉଦ୍‌ଘାଟନ କଲେ ।

୧୭-୬-୭୬ କାରଣ ନ ଦର୍ଶାଇ ଯେ କୌଣସି ବ୍ୟକ୍ତିଙ୍କୁ ୨୪ ମାସ ପର୍ଯ୍ୟନ୍ତ ଆଭ୍ୟନ୍ତରୀଣ ନିରାପତ୍ତା ରକ୍ଷା ଆଇନ ବଳରେ ଅଟକ ରଖାଯାଇ ପାରିବ ବୋଲି ରାଷ୍ଟ୍ରପତି ଏକ ଅଧ୍ୟାଦେଶ ଜାରି କଲେ ।

୨୧-୬-୭୬ ଭୁବନେଶ୍ୱର ଉନ୍ନୟନ ସଂସ୍ଥା ତରଫରୁ ଭୁବନେଶ୍ୱର ସହରର ଲକ୍ଷ୍ମୀସାଗର ଅଞ୍ଚଳରେ ଏକ ଗୃହନିର୍ମାଣ ଯୋଜନାର ଭିତ୍ତି ପ୍ରସ୍ତର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ସ୍ଥାପନ କଲେ ।

## ଜୁଲାଇ ୧୯୭୬

୧-୭-୭୬ ରାଜ୍ୟ ବିଦ୍ୟୁତ୍ ଓ ଜଳସେଚନ ରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଦିବ୍ୟଲୋଚନ ଶେଖର ଦେଓ କେନ୍ଦୁଝର ଜିଲ୍ଲା ତେଲକୋଇ ଅଞ୍ଚଳର ୫ଟି ଗ୍ରାମକୁ ବିଦ୍ୟୁତ୍ ସଂଯୋଗ କଲେ ଏବଂ ବାଂଶପାଳଠାରେ ଏକ ଗ୍ରାମ୍ୟ ବିଦ୍ୟୁତକରଣ ଯୋଜନାର ଶୁଭ ଦେଲେ ।

୨୫-୭-୭୬ କଟକ ଜିଲ୍ଲାର ଏରସମାଠାରେ ୩୦ ଶଯ୍ୟା ବିଶିଷ୍ଟ ଏକ ଡାକ୍ତରଖାନାର ଭିତ୍ତି ପ୍ରସ୍ତର ରାଜ୍ୟ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ସୋମନାଥ ରଥ ସ୍ଥାପନ କଲେ ।

୨୭-୭-୭୬ ବାଲେଶ୍ୱର ଜିଲ୍ଲାର ନାଇକାଣିଡିହଠାରେ ରାଜ୍ୟ ବିଦ୍ୟୁତ୍ ଓ ଜଳସେଚନ ରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଦିବ୍ୟଲୋଚନ ଶେଖର ଦେଓ ଏକ ଗ୍ରାମ୍ୟ ବିଦ୍ୟୁତ୍ ଯୋଜନା ଉଦ୍‌ଘାଟନ କଲେ ।

## ଅଗଷ୍ଟ ୧୯୭୬

୧୫-୮-୭୬ ଭୁବନେଶ୍ୱରଠାରେ ନବନିର୍ମିତ 'ସୂଚନା ଭବନ' ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଉଦ୍‌ଘାଟନ କଲେ ।

୧୭-୮-୭୬ ଓଡ଼ିଶାର ଦଶଜଣ ବୃଦ୍ଧ ଓ ଦୁଃସ୍ଥ କଳାକାରଙ୍କୁ ମୁଖ୍ୟମନ୍ତ୍ରୀ ପେନସନ ଆଦେଶପତ୍ର ପ୍ରଦାନ କଲେ ।

୨୦-୮-୭୬ ଲାଓସ ରାଷ୍ଟ୍ରପତି ସୌଫୋନା ଭୁଙ୍ଗଙ୍କ ଓଡ଼ିଶା ପରିଦର୍ଶନ ।

ଓଡ଼ିଶା ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ସମ୍ବଲପୁରଠାରେ ଏକ ନବ ନିର୍ମିତ ପାନ୍ଥ ନିବାସ ଉଦ୍‌ଘାଟନ କଲେ ।

୨୧-୮-୭୬ ସୁନ୍ଦରଗଡ଼ ଜିଲ୍ଲାର ବିଦବଡନଗରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ୫୦ ଶଯ୍ୟା ବିଶିଷ୍ଟ ଏକ ଚିକିତ୍ସାଳୟ ଉଦ୍‌ଘାଟନ କଲେ ।

୨୩-୮-୭୬ କେନ୍ଦୁଝର ଜିଲ୍ଲାର ପରସାଳାଠାରେ ରାଜ୍ୟ ସ୍ୱାସ୍ଥ୍ୟ ରାଷ୍ଟ୍ର ମନ୍ତ୍ରୀ ଶ୍ରୀ ସୋମନାଥ ରଥ ଏକ ଆୟୁର୍ବେଦ ଚିକିତ୍ସାଳୟ ଉଦ୍‌ଘାଟନ କଲେ ।

୨୮-୮-୭୬ ୧୪୦ ଟି ହାଇସ୍କୁଲରେ ପୁସ୍ତକ ବ୍ୟାଙ୍କ ଖୋଲିବାପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏକଲକ୍ଷ ୭୮ ହଜାର ଟଙ୍କା ମଞ୍ଜୁର କଲେ ।

ବିଶିଷ୍ଟ ବଙ୍ଗଳା କବି କାଜି ନଜରୁଲ ଇସଲାମଙ୍କର ଢାକାଠାରେ ପରଲୋକ ।

୩୧-୮-୭୬ କଟକ ଜିଲ୍ଲାର ଭୁଡମୁଣ୍ଡାଇଠାରେ ୟୁନାଇଟେଡ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ ତରଫରୁ ପ୍ରଥମ ଭ୍ରାମ୍ୟମାଣ ବ୍ୟାଙ୍କ ଖୋଲାଗଲା ।

---



OGP—MPVIII [Home (P. R.)] 73—12,000—17-9-1976



୧୯୭୬ ଅଗଷ୍ଟ ୨୩ ତାରିଖ ଦିନ ଭାରତର ରାଷ୍ଟ୍ରପତି ଶ୍ରୀ ଫକ୍ରୁଦ୍ଦିନ୍ ଅଲି ଅହମ୍ମଦ ଜାର୍ମାନ୍ ଫେଡେରାଲ୍ ଜର୍ମାନୀର ଫେଡେରାଲ ଚାନ୍ସେଲର ଡକ୍ଟର ମନ୍‌ଫ୍ରେଡ୍ ଉତ୍‌ଦାଲ୍‌ଙ୍କୁ ରାଷ୍ଟ୍ରପତି ଭବନଠାରେ ଅଭିବାଦନ ଜଣାଉଛନ୍ତି ।



ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ କେ. ଏ. ଦଲେଇ, ଜନସାଧାରଣଙ୍କ ଅଭିଯୋଗ ଶୁଣୁଛନ୍ତି ।

Licence No. C. R. N. P. 5—*Licensed* to post without Pre-Payment



ସୂଚନା ଭବନ—ଭୁବନେଶ୍ୱର
( ଶିଳ୍ପୀ — ଶ୍ରୀ ଲଳିତ ମୋହନ ପଟ୍ଟନାୟକ )

Printed at Orissa Govt. Press, Cuttack—10